

ଚତୁର୍ଥ ବର୍ଷ ● ମେ, ୧୯୫୫ ● ଦଶ ମ ସଂଖ୍ୟା

# ଆହ୍ୱାନ

ଶ୍ରୀ ଲୋକନାଥ ପୃଷ୍ଟି

ସ୍ୱାଧୀନ ଦେଶର    ଛାତ୍ରବାହିନୀ ମୋ
ନୂତନ ପଥର ଯାତ୍ରି,
ପରାଧୀନତାର    ତମସା ଲୁଚିଛି
ପାହିଛି ଦୁଃଖର ରାତ୍ରି ।

ନୂଆ କରି ଆସ    ଗଢ଼ିବା ଆମର
ସ୍ୱାଧୀନ ଭାରତ ଦେଶ
ଆଣିବା ଫେରାଇ    ଭାରତେ ଆମର
ପୂର୍ବର ଗୌରବ ଯଶ ।

ଆମେ ବି ଗଢିବା    କୋଣାରକ ପୁରୀ
ମନ୍ଦିର ଭୁବନେଶ୍ୱର,
ଯାହାର ସୌନ୍ଦର୍ଯ୍ୟ,    କଳା କଉଶଳେ
ଚକିତ ହେବ ସଂସାର ।

ଆମରି ଦେଶର    ଧରମପଦ ସେ
ଗଢିଗଲା କୋଣାରକ,
ଆମରି ଦେଶର    ବାଜି ରାଉତ ସେ
ରଖିଗଲା ଜାତି ଟେକ ।

ତୁମରି ପରି ସେ    ଟିକି ଟିକି ପିଲା
ଜାତି ପାଇଁ ଦେଲେ ପ୍ରାଣ
ମର ଶରୀରରେ    ଅମର ହେଲେ ସେ
ରଖିଲେ ଦେଶର ତ୍ରାଣ ।

ବିନ୍ଦୁ ବିନ୍ଦୁ ଜଳ    ମିଶିଲେ ଅଥଳ
ବାରିଧିର ରୂପ ଧରେ
ବିନ୍ଦୁର ଭିତରେ    ସିନ୍ଧୁର ସନ୍ଧାନ
ମିଳେ ପରା ଏକତାରେ ?

ଆସିଛି ଆହ୍ୱାନ    ଉଠ ଉଠ ସୈନ୍ୟ
ଆଳସ୍ୟ ଜଡ଼ତା ତେଜି
ସତ୍ୟ ଶାନ୍ତି ପଥେ    କର ଅଭିଯାନ
ଅହିଂସା ମନ୍ତ୍ରକୁ ଭଜି ।

'ଦୁଃଖ ଦୈନ୍ୟ ଦେଶୁ    ଦୂର' ଆମ ପଣ
ହେଉ ଜୀବନର ସାର
ବିଶ୍ୱର ମଇତ୍ରୀ    ପ୍ରଗତି ପଥେ ମୋ
ଆଗୁଆ ଯୁଗର ବୀର,

କର ଅଭିଯାନ,    ଭୁଲି ଅଭିମାନ
ଆଳସ୍ୟ, ଜଡତା ତେଜି
ଦେଶ ଯଶ ବିଶ୍ୱ    ଜୀବନ ପଥରେ
ଜୀବନ ଦେବା ହେ ଆଜି ।'



# ଆନ୍ତର୍ଜାତିକ ବିଚାରାଳୟ

ଶ୍ରୀ ବାସୁଦେବ ତ୍ରିପାଠୀ ବି. ଏ. ଡି· ଇଡ଼୍

ଜାତିସଂଘ ପୃଥିବୀର ବହୁ ସ୍ୱାଧୀନ ରାଷ୍ଟ୍ରକୁ ନେଇ ଗଠିତ। ମାନବ ଜାତିର ସମ୍ୟକ୍ କଲ୍ୟାଣ ବିଧାନ କରିବା ନିମନ୍ତେ ଉକ୍ତ ଅନୁଷ୍ଠାନର ଜନ୍ମ । ରାଷ୍ଟ୍ରମାନଙ୍କ ମଧ୍ୟରେ ବନ୍ଧୁତା ସ୍ଥାପନ କରି ପରସ୍ପରକୁ ବିପଦ ଆପଦବେଳେ ଯଥାସମ୍ଭବ ସାହାଯ୍ୟ ଓ ସହାନୁଭୂତି ଦେଖାଇବା ଉଦ୍ଦେଶ୍ୟରେ ଏହାର କାର୍ଯ୍ୟ ବହୁମୁଖୀ । କେହି କାହାରିକୁ ଆକ୍ରମଣ ନ କରନ୍ତୁ ଏବଂ କାହାରି ଦ୍ୱାରା ଉଦ୍‌ଭାବିତ ମାରଣାସ୍ତ୍ର ମାନବ ସମାଜର ଉଚ୍ଛେଦ ସାଧନ ନ କରୁ, ଏହା ଅନୁଷ୍ଠାନର ଅନ୍ୟତମ ଲକ୍ଷ୍ୟ । ପୃଥିବୀର କେତେକ ସ୍ୱାଧୀନ ରାଷ୍ଟ୍ର ଅର୍ଥନୈତିକ କିଂବା ରାଜନୈତିକ ଦୃଷ୍ଟିକୋଣରୁ କଳହ ଭିଆଇ ଜାତି-ସଂଘ ନିକଟରେ ଫେରାଦ ହୋଇଥାନ୍ତି । ଜାତିସଂଘ ସେହି ଅଭିଯୋଗର ସୁବିଚାର କିପରି କରେ, ତାହା ଏଠାରେ ଉଲ୍ଲେଖ କରାଗଲା ।

ଯେପରି ପ୍ରତ୍ୟେକ ରାଷ୍ଟ୍ରର ମକଦ୍ଦମାର ଶେଷ ବିଚାର ସେହି ରାଷ୍ଟ୍ରର ସର୍ବୋଚ୍ଚ ଅଦାଲତରେ ନିଷ୍ପତ୍ତି ହୁଏ, ସେହିପରି ସ୍ୱାଧୀନ ରାଷ୍ଟ୍ରମାନଙ୍କ ମଧ୍ୟରେ ଉପୁଜିଥିବା କଳି ପୃଥିବୀ ଅଦାଲତରେ ମୀମାଂସିତ ହୋଇଥାଏ । ଏହି ଅଦାଲତରେ ସର୍ବମୋଟ ପନ୍ଦର ଜଣ ବିଚାରପତି ଥାନ୍ତି । ସେମାନେ ସମସ୍ତେ ନିରପେକ୍ଷ ବିଚାରକ ଏବଂ ବିଶିଷ୍ଟ ଆଇନଜ୍ଞ । କୌଣସି ସଭ୍ୟରାଷ୍ଟ୍ରରୁ ଏକାଧିକ ବିଚାରପତି ବିଚାରକମଣ୍ଡଳୀରେ ସ୍ଥାନ ପାଆନ୍ତି ନାହିଁ । ଜାତିସଂଘର ପ୍ରଧାନ ସଭାଗୃହ ସାଧାରଣ ଆସେମ୍ବ୍ଲି ଓ ନିରାପତ୍ତା କାଉନ୍‌ସିଲ୍ ସେମାନଙ୍କୁ ନଅବର୍ଷ ନିମନ୍ତେ ନିର୍ବାଚିତ କରନ୍ତି । ନିର୍ବାଚିତ ଜଜମାନେ ଇଚ୍ଛା କଲେ ପୁନର୍ବାର ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିପାରିବେ । ମାତ୍ର ସେଥିପାଇଁ କେତେକ ସ୍ୱତନ୍ତ୍ର କାରଣ ଥିବା ଦରକାର । ଯଦି ୩ ବର୍ଷ ଶେଷରେ ୫ ଜଣ ବିଚାରପତିଙ୍କର କାର୍ଯ୍ୟକାଳ ପୂରି-ଯାଉଥାଏ, ଏବଂ ୬ ବର୍ଷ ଶେଷକୁ ଆହୁରି ୫ ଜଣଙ୍କର କାର୍ଯ୍ୟକାଳ ଶେଷ ହୁଏ, ତାହାହେଲେ ପୁନଃନିର୍ବାଚନ ସମ୍ଭବପର ହୁଏ ।

କୌଣସି ବିଚାରପତି କାର୍ଯ୍ୟରୁ ଇସ୍ତଫା ଦେବାକୁ ହେଲେ, କୋର୍ଟର ସଭାପତିଙ୍କୁ ସମ୍ବୋଧନ କରି ତାଙ୍କୁ ଦରଖାସ୍ତ କରିବାକୁ ପଡ଼େ । ସେ ସେକ୍ରେଟରୀ-ଜେନେରାଲଙ୍କ ନିକଟକୁ ଉକ୍ତ ଦରଖାସ୍ତ ତୁରନ୍ତ ପଠାଇ ଥାନ୍ତି । କୋର୍ଟର କୌଣସି ବିଚାରପତି ରାଜନୀତି ତଥା ବ୍ୟବସାୟ ପନ୍ଥା ଅନୁସରଣରେ ଲିପ୍ତ ରହନ୍ତି ନାହିଁ । ଏ ସମ୍ପର୍କରେ କୌଣସି ସନ୍ଦେହ ଉପୁଜିଲେ କୋର୍ଟ ତାହା ବିଚାର କରି ନିଷ୍ପତ୍ତି ଦିଅନ୍ତି । ସର୍ବାଧିକ ମତକୁ ଉପେକ୍ଷା କରି କୋର୍ଟର କୌଣସି ସଭ୍ୟ କାର୍ଯ୍ୟରୁ ଅନ୍ତର ହୁଅନ୍ତି ନାହିଁ । ରେଜିଷ୍ଟ୍ରାର ନିଜେ ଏ ସମ୍ବନ୍ଧରେ ଯାବତୀୟ ଚିଠିପତ୍ରର ଆଦାନ ପ୍ରଦାନ ତୁଲାଇ ଥାନ୍ତି । ସେ ସବୁ ଘଟଣା ସେକ୍ରେଟରୀ-ଜେନେରାଲଙ୍କ ଗୋଚରକୁ ଆଣିବାକୁ ବାଧ୍ୟ ହୁଅନ୍ତି । କୋର୍ଟର ସଭ୍ୟମାନେ ସ୍ୱବୃତ୍ତିରେ ନିପ୍ତ ଥିବାଯାଏ ସେମାନଙ୍କୁ କୂଟନୈତିକ ସୁବିଧା ଓ ସୁଯୋଗରୁ କେହି ବଞ୍ଚିତ କରି ପାରନ୍ତି ନାହିଁ । ପ୍ରତ୍ୟେକ ସଭ୍ୟ ନିର୍ଭର ମନରେ ଶପଥ ଗ୍ରହଣ କରି ସ୍ୱ କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି ।

ସଭାପତି ଓ ଉପସଭାପତିଙ୍କୁ କୋର୍ଟ ତିନିବର୍ଷ ନିମନ୍ତେ ନିର୍ବାଚିତ କରନ୍ତି । ଏହା ଛଡ଼ା ରେଜିଷ୍ଟ୍ରାର ଓ ଅନ୍ୟାନ୍ୟ କର୍ମଚାରୀଙ୍କୁ କୋର୍ଟ ନିଯୁକ୍ତ କରେ । ହେଗ୍‌ଠାରେ ବର୍ତ୍ତମାନ ଆନ୍ତର୍ଜାତିକ ବିଚାରାଳୟ ପ୍ରତିଷ୍ଠିତ ହୋଇଛି । ଏଠାରୁ ବିଚାରାଳୟ ଉଠି ଯିବାର କଥା ନାହିଁ ମାତ୍ର ସେଭଳି ପ୍ରୟୋଜନ ହେଲେ ସ୍ଥାନ ପରିବର୍ତ୍ତନ କରାଯାଇପାରେ ।

କୋର୍ଟର ସଭ୍ୟମାନଙ୍କ ବିଷୟରେ କେତେକ କଟକଣା ରହିଛି । ଯଦି କୌଣସି ସଭ୍ୟ ଏକ ମାମଲାରେ ଭାଗ ନେବାକୁ ଚାହାନ୍ତି, ତାହାହେଲେ ତାଙ୍କୁ ସଭାପତିଙ୍କଠାରୁ ଅନୁମତି ନେବାକୁ ହୁଏ । ସଭାପତି ମଧ୍ୟ ସ୍ୱତନ୍ତ୍ର କାରଣ ଦର୍ଶାଇ ଯେ କୌଣସି ବିଚାରପତିଙ୍କୁ ମକଦ୍ଦମାରେ ଯୋଗ ନ ଦେବାପାଇଁ ବାରଣ କରିପାରନ୍ତି । ଯଦି ସଭ୍ୟ ଓ ସଭା-ପତିଙ୍କ ମଧ୍ୟରେ କେତେକ କାରଣ ଯୋଗୁ ମତାନ୍ତର ଉପୁଜେ, ତେବେ କୋର୍ଟ ତାହା ନିଷ୍ପତ୍ତି କରନ୍ତି । ବିଚାର-ମଣ୍ଡଳୀଙ୍କ ମଧ୍ୟରୁ ୯ଜଣ ଉପସ୍ଥିତ ନ ଥିଲେ ବିଚାର କାର୍ଯ୍ୟ ଧାର୍ଯ୍ୟ (quorum) ହୋଇପାରେ ନାହିଁ । ୩ଜଣ କିମ୍ବା ୪ଜଣ ବିଚାରପତିଙ୍କୁ ନେଇ ଏକ ସ୍ୱତନ୍ତ୍ର ବିଚାରକକ୍ଷ ହୋଇପାରେ । ତହିଁରେ କୌଣସି ଗୁରୁତର ସମସ୍ୟା ଆଲୋଚିତ ହୁଏ ନାହିଁ ।

ବାଦୀ ଓ ପ୍ରତିବାଦୀଙ୍କ ସ୍ୱୀକୃତିରେ କୋର୍ଟର ଏକ ଦଉ-ଗୀୟ ପ୍ରକୋଷ୍ଠରେ ବିଚାର କାର୍ଯ୍ୟ ହୋଇପାରେ । ବିଚାରପତି-ମାନଙ୍କ ସଂଖ୍ୟା କୋର୍ଟ ଉଭୟଙ୍କର ମତ ନେଇ ସ୍ଥିର କରି ଥାନ୍ତି । ବାଦୀ ଓ ପ୍ରତିବାଦୀ ଲିଖିତାକାରରେ ଅନ୍ୟତ୍ର କୋର୍ଟ ଉଠାଇ ନେବାକୁ ବିଧିବଦ୍ଧ କାରଣ ଦର୍ଶାଇଲେ ହେଗ୍‌ଠାରୁ କୋର୍ଟ ଅନ୍ୟତ୍ର ସ୍ଥାନାନ୍ତର ହୁଏ ।

ଉକ୍ତ ବିଚାରାଳୟର ସଭ୍ୟମାନେ ଦରମା ପାଆନ୍ତି, ମାତ୍ର ସଭାପତିଙ୍କୁ ଏକ ସ୍ୱତନ୍ତ୍ର ଭତ୍ତା ମିଳେ । ଉପସଭାପତି ଯେତେଦିନ ପାଇଁ ସଭାପତିଙ୍କ କାର୍ଯ୍ୟ ତୁଲାଇଥାନ୍ତି ତାଙ୍କୁ ସେଥିପାଇଁ ସ୍ୱତନ୍ତ୍ର ଭତ୍ତା ଦିଆଯାଏ । ସମସ୍ତଙ୍କର ଦରମା, ଭତ୍ତା, କ୍ଷତିପୂରଣ ଇତ୍ୟାଦି ସାଧାରଣ ଆସେମ୍ବ୍ଲି ଦ୍ୱାରା ସ୍ଥିରୀ-କୃତ ହୁଏ । କୋର୍ଟର ପରାମର୍ଶ ଲୋଡ଼ି ସାଧାରଣ ଆସେମ୍ବ୍ଲି ରେଜିଷ୍ଟ୍ରାରଙ୍କ ଦରମା ସ୍ଥିର କରନ୍ତି । ଏହି ଶୃଙ୍ଖଳରେ ଏତିକି ବିଶେଷତ୍ୱ ଯେ, ଉକ୍ତ ବ୍ୟକ୍ତିମାନଙ୍କୁ କୌଣସି କର ଦେବାକୁ ପଡ଼େ ନାହିଁ ।

ମକଦ୍ଦମାର ନିଷ୍ପତ୍ତି ସଂଖ୍ୟାଗରିଷ୍ଠ ବିଚାରପତିଙ୍କ ଉପରେ ନିର୍ଭର କରେ । କେହି ବିଚାରପତି ସ୍ୱତନ୍ତ୍ର ମତ ବ୍ୟକ୍ତ କଲେ, ତାହା କଦାପି ଉପେକ୍ଷା କରାଯାଏ ନାହିଁ । ସେହି ବିଚାରପତିଙ୍କ ମତାମତ ଲିଖିତାକାରରେ ପ୍ରକାଶିତ ହୁଏ । ସଭାପତିଙ୍କର ବିଚାରବେଳେ ସର୍ବଦା ଏକ ଅଧିକ ଭୋଟ (Casting vote) ଥାଏ । ତାଙ୍କ ଅନୁପସ୍ଥିତିରେ ବିଚାର କାର୍ଯ୍ୟ ସ୍ଥଗିତ ରହେନାହିଁ । ସଭାପତି ଓ ରେଜିଷ୍ଟ୍ରାରଙ୍କର ଦସ୍ତଖତ ବିଚାରପତିଙ୍କ ରାୟ ପାଖରେ ରହିଥାଏ । ରାୟ କୋର୍ଟରେ ଶୁଣାଇ ଦେବାପରେ ଉଭୟ ପକ୍ଷଙ୍କୁ ମଧ୍ୟ ଲିଖିତାକାରରେ ଜଣାଇ ଦିଆଯାଏ । ବେଳେ ବେଳେ ବାଦୀ କିମ୍ବା ପ୍ରତିବାଦୀ କୋର୍ଟରେ ବିଭଜନ ପାଇଁ ପ୍ରାର୍ଥନା କରିଥାନ୍ତି । ବିଚାରକମଣ୍ଡଳୀ ତାହା ଯୁକ୍ତିସଙ୍ଗତ ମନେ-କଲେ ଗ୍ରହଣ କରି ପାରନ୍ତି । ନୋହିଲେ ସେପରି ପ୍ରାର୍ଥନା ନାମଞ୍ଜୁର ହୁଏ । ବିଭଜନ କେଶ୍ ନିଷ୍ପତ୍ତିର ୬ ମାସ ମଧ୍ୟରେ କରିବାକୁ ପଡ଼େ । କୌଣସି ମକଦ୍ଦମା କୋର୍ଟଦ୍ୱାରା ନିଷ୍ପତ୍ତି ହୋଇ ସାରିଥିଲେ ତାହା ପୁନର୍ବାର ଆଗତ କରାଯାଏ ନାହିଁ । ୧୦ ବର୍ଷରୁ ଅଧିକ ଗଡ଼ିଯାଇଥିବା ଘଟଣା ବିଚାରକୁ ଆସେନାହିଁ ।

କୋର୍ଟରେ ଚଳନ୍ତି ଭାଷା—ଇଂରାଜୀ ଏବଂ ଫ୍ରେଞ୍ଚ । ବିଚାରପତିମାନେ ଏହି ଦୁଇଭାଷା ମାଧ୍ୟମରେ ସବୁ ଶୁଣି ରାୟ ଦିଅନ୍ତି । ମୁଦେଇ ଓ ମୁଦାଲା ଯେଉଁ ଭାଷା ବ୍ୟବହାର କରନ୍ତି, କୋର୍ଟ ଠିକ୍ ସେହି ଭାଷାରେ ରାୟ ଦେବାକୁ ବାଧ୍ୟ । ନିର୍ଦ୍ଧାରିତ ଦୁଇଟି ଭାଷା ବ୍ୟତୀତ ପକ୍ଷ ଅନ୍ୟ କୌଣସି ଭାଷା ବ୍ୟବହାର କରିବାକୁ ଇଚ୍ଛାକଲେ କୋର୍ଟର ଅନୁମତି ନେବାକୁ ହୁଏ । ଭାଷା ସମ୍ବନ୍ଧରେ ବାଦାନୁବାଦ ହେଲେ କୋର୍ଟଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ହୁଏ । ଉଭୟ ପକ୍ଷ ଏଜେଣ୍ଟ ନିଯୁକ୍ତ କରିବାରେ କୌଣସି ବାଧା ନାହିଁ । ଏକତରଫା ବିଚାର କୋର୍ଟର ଲକ୍ଷ୍ୟ ଓ ନୀତି ନୁହେଁ । ଏଣୁ ଏମାନଙ୍କଠାରୁ ସନ୍ତୋଷଜନକ ବିଚାର ନ ମିଳିବ କାହିଁକି ?



# ଦ୍ରୁତ ପଠନ ଶୈଳୀ

ଶ୍ରୀ ରବିନାରାୟଣ ସାହୁ

ଆଜିକାଲି ପଠନ କେବଳ ଗୋଟିଏ ସୌଖୀନ ବିଷୟ ହୋଇ ରହିନାହିଁ । ଯେ କୌଣସି ଉଚ୍ଚାଭିଳାଷୀ ବା ବର୍ତ୍ତମାନ ସଭ୍ୟତା ସହିତ ତାଳ ପକାଇ ଗତି କରିବାକୁ ଚାହୁଁଥିବା ଲୋକ ପକ୍ଷରେ ଏହା ନିତାନ୍ତ ଆବଶ୍ୟକ । ସାହିତ୍ୟ, ବୈଜ୍ଞାନିକ ସାହିତ୍ୟ, ବୈଷ-ୟିକ ସାହିତ୍ୟ ଏବଂ ସମ୍ବାଦର ପରିମାଣ ଦିନୁଦିନ ବଢ଼ି ଚାଲିଛି । ମାତ୍ର ଏକ କ୍ଷୋଭର ବିଷୟ ଏହି ଯେ, ଅନେକ ବ୍ୟକ୍ତି ପ୍ରାଥମିକ ବିଦ୍ୟାଳୟରେ ପଢ଼ିବା ସମୟରେ ଯେପରି ପାଠ କରୁଥିଲେ ଆଜି ମଧ୍ୟ ସେପରି ଆୟାସର ସହିତ, ରହି ରହି ଏବଂ ଅନେକ ସମୟରେ କିଛି ମଧ୍ୟ ନ ବୁଝି ଅତି ମନ୍ଥର ଗତିରେ ପାଠ କରନ୍ତି ।

ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କର ମନ୍ଦ ପଠନ ଅଭ୍ୟାସ ଅଛି; କାରଣ ଉତ୍ତମ ରୂପେ ପାଠ କରିବା ଶିକ୍ଷା ଆମକୁ ଦିଆଯାଇ ନାହିଁ । ଶିକ୍ଷା ଓ ବୁଦ୍ଧି ସହିତ

ଦ୍ରୁତ ପଠନର କୌଣସି ସମ୍ବନ୍ଧ ନାହିଁ । ଏଣୁ ଅନେକ ବ୍ୟବସାୟ ପ୍ରତିଷ୍ଠାନର ଏକ୍‌ଜିକ୍ୟୁଟିଭ କର୍ମଚାରୀ, ଓକିଲ, ଡାକ୍ତର, ଇଞ୍ଜିନିୟର ଏପରିକି ଶିକ୍ଷକମାନଙ୍କର ମଧ୍ୟ ମନ୍ଦ ପଠନ ଅଭ୍ୟାସ ଅଛି । କାରଣ ସେମାନେ ମଧ୍ୟ ଜାଣନ୍ତି ନାହିଁ ଯେ ଉପଯୁକ୍ତ ତାଲିମ ଦ୍ୱାରା ବର୍ତ୍ତମାନ ଯେତିକି ବେଗରେ ସେମାନେ ପାଠ କରି ପାରୁଛନ୍ତି ତାର ୫।୧୦ ଗୁଣ ଅଧିକ ବେଗରେ ପାଠ କରି ପାରିବେ ।

ଏହି ମନ୍ଦ ଅଭ୍ୟାସଗୁଡ଼ିକର ସଂଖ୍ୟା ଅନେକ, ମାତ୍ର ସେମାନଙ୍କ ମଧ୍ୟରୁ ନିମ୍ନଲିଖିତ ବଦଭ୍ୟାସଗୁଡ଼ିକ ପ୍ରଧାନ ଏବଂ ଏଗୁଡ଼ିକ ସମସ୍ତେହିଁ ମନ୍ଥର ପଠନ ନିମିତ୍ତ ଦାୟୀ ।

୧ । ପଠନ ସମୟରେ ଗୋଟିଏ ଶବ୍ଦ ଛାଡ଼ିଯିବା ଭାବି ପଡ଼ି ଆସୁଥିବା ବିଷୟକୁ ପୁଣି ପଢ଼ିବା ।

୨ । ପ୍ରତ୍ୟେକ ଅନୁଚ୍ଛେଦରେ ଥିବା ପ୍ରତ୍ୟେକ ଶବ୍ଦକୁ ପଢ଼ିବା ।

୩ । ଗୋଟିଏ ପୃଷ୍ଠା ପଢ଼ିଲାବେଳେ ମୁଣ୍ଡକୁ ବାମରୁ ଡାହାଣକୁ ହଲାଇବା ।

୪ । ପାଠ କରିବା ସମୟରେ ଶବ୍ଦଗୁଡ଼ିକ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ପଢ଼ିବା ।

୫ । ପଠନ ସମୟରେ ଶବ୍ଦଗୁଡ଼ିକୁ ଉଚ୍ଚାରଣ କରିବା ପାଇଁ ଓଷ୍ଠାଧର ଚାଳନା କରିବା ।

୬ । ପଠନ ବିଷୟରେ ପୂର୍ଣ୍ଣ ମନୋନିବେଶ ନ କରିବା ।

ଦ୍ରୁତ ପଠନକୁ ଉତ୍ସାହିତ କରିବା ଯୋଜନାରେ ଅନେକ ବିଖ୍ୟାତ ବିଶ୍ୱବିଦ୍ୟାଳୟ ଏବଂ ଶିଳ୍ପ ପ୍ରତିଷ୍ଠାନ (ବିଶେଷତଃ ଯୁକ୍ତରାଷ୍ଟ୍ରର) ସେମାନଙ୍କର ଛାତ୍ର ଓ କର୍ମଚାରୀମାନଙ୍କର ପଠନ ବେଗ ବୃଦ୍ଧି କରାଇବା ନିମନ୍ତେ କ୍ଲାସ ମଧ୍ୟ ଖୋଲିଛନ୍ତି । ଉଭୟ ପଠନ ବେଗ ବୃଦ୍ଧି କରିବାରେ ଏବଂ ନୂତନ ପଠନ ଅଭ୍ୟାସ ସହଜରେ ହାସଲ କରିବାରେ ଛାତ୍ର ଓ କର୍ମଚାରୀମାନେ ସନ୍ତୋଷଜନକ ଫଳ ଦେଖାଇଛନ୍ତି ।

ଇମ୍ପିରିଆଲ କେମିକାଲ ଇଣ୍ଡଷ୍ଟ୍ରୀଜ୍, ଷ୍ଟାଣ୍ଡାର୍ଡ଼ ଅଏଲ କମ୍ପାନୀ, ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀ ଆଦି ଶିଳ୍ପ ପ୍ରତିଷ୍ଠାନ ଏବଂ ହାର୍ଭାର୍ଡ, ନିଉୟର୍କ ଓ ଟେମ୍ପଲ ଆଦି କେତୋଟି ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟ ପଠନ ବେଗ ବୃଦ୍ଧି କରିବା ନିମନ୍ତେ କ୍ଲାସ ଖୋଲି ମୂଲ୍ୟବାନ କାର୍ଯ୍ୟ ସମ୍ପନ୍ନ କରିଛନ୍ତି । ଏତଦ୍‌ବ୍ୟତୀତ ନିଉୟର୍କ ରିଡ଼ିଂ ଲାବୋରେଟରୀ ସଦୃଶ ଘରୋଇ ଅନୁଷ୍ଠାନ ମଧ୍ୟ ଯୁକ୍ତରାଷ୍ଟ୍ରରେ ଆରମ୍ଭ ହୋଇଅଛି ଯେଉଁଠାରେ କି ଲୋକମାନଙ୍କଠାରୁ କିଛି ମାତ୍ର ଫିସ୍ ନିଆଯାଇ ପଠନ ଶୈଳୀ ଶିକ୍ଷା ଦିଆଯାଉଅଛି ।

I.C.I. ହୃଦୟଙ୍ଗମ କଲେ ଯେ ଉକ୍ତ ଅନୁଷ୍ଠାନର ଏକ୍‌ଜିକ୍ୟୁଟିଭ କର୍ମଚାରୀମାନେ ବର୍ତ୍ତମାନ ଦୁନିଆରେ ବ୍ୟବସାୟ ଓ ବିଜ୍ଞାନ କ୍ଷେତ୍ରରେ ହେଉଥିବା ଦ୍ରୁତ ସହିତ ସମତା ରକ୍ଷା କରି ଗତି କରିବା ନିମନ୍ତେ ବିପୁଳ ପରିମାଣର ବୈଷୟିକ ସାହିତ୍ୟ ପାଠ କରିବା ଉଚିତ । ଏଣୁ ଏହାର ଶିକ୍ଷା ବିଭାଗ ଏକ୍‌ଜିକ୍ୟୁଟିଭ କର୍ମଚାରୀମାନଙ୍କର ସାଧାରଣ ପଠନ ବେଗ ମିନିଟକେ ପ୍ରାୟ ୨୦୦ ଶବ୍ଦରୁ ୨।୩ ଗୁଣ ବୃଦ୍ଧି କରିବାରେ ସାହାଯ୍ୟ କରିବା ନିମନ୍ତେ କେତେକ ଫିଲ୍ମ ପ୍ରସ୍ତୁତ କଲେ। ଫିଲ୍ମ ଗୁଡ଼ିକ ଛପା ଅନୁଚ୍ଛେଦମାନ ପରଦାରେ ଦର୍ଶାଇ ସାଧାରଣ ବେଗରେ ଗତି ଆରମ୍ଭ କରନ୍ତି ଏବଂ ପ୍ରତି ଫିଲ୍ମର ଗତି କ୍ରମଶଃ ବୃଦ୍ଧି କରାଯାଇଥାଏ ।

ବିରାଟ ଶିଳ୍ପ ପ୍ରତିଷ୍ଠାନମାନଙ୍କ ପକ୍ଷେ ଉନ୍ନତ ପଠନ କେବଳ ଶିକ୍ଷାର୍ଜ୍ଜନ ଦୃଷ୍ଟିରୁ ଆବଶ୍ୟକ ନୁହେଁ । ଯଦି ଏକ୍‌ଜିକ୍ୟୁଟିଭ କର୍ମଚାରୀମାନେ ଶୀଘ୍ର ଶୀଘ୍ର ପାଠ କରି ପାରିବେ ସେମାନଙ୍କ କର୍ମ ସମୟର ପ୍ରାୟ ଅଧାଅଧି ସମୟ ପଢ଼ିବା ଦିଗରେ ବ୍ୟୟ କରିବାକୁ ହେବ ନାହିଁ । ଅର୍ଥାତ୍ ଏକ୍‌ଜିକ୍ୟୁଟିଭ ଅଫିସରମାନେ ତଦ୍ଦ୍ୱାରା ସେମାନଙ୍କର ବୁଦ୍ଧି ବ୍ୟବସାୟ ସଂକ୍ରାନ୍ତୀୟ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ବିନିଯୋଗ କରି ପାରିବେ ।

ଉଚ୍ଚ ଚାକିରି ପାଇବା ନିମିତ୍ତ ଦ୍ରୁତ ପଠନ ଏକ ପ୍ରଧାନ ଆବଶ୍ୟକତା । ଯୁକ୍ତରାଷ୍ଟ୍ରର ଏବକାର ଏକ ସାମାଜିକ ସର୍ଭେରୁ ପ୍ରକାଶ ଯେ ପ୍ରାୟ ୩୦୦୦ ହାଇସ୍କୁଲ ଛାତ୍ର ପୂରାପୂରି ଭବିଷ୍ୟତ ନ ଥିବା ଚାକିରିରେ ଯୋଗ ଦେଇଛନ୍ତି ।

ଏମାନଙ୍କ ମଧ୍ୟରୁ ଅତି ଅଳ୍ପସଂଖ୍ୟକ ଛାତ୍ର ମନୋନିବେଶ ପୂର୍ବକ ଉତ୍ତମରୂପେ ପାଠ କରି ପାରନ୍ତି । ଏଥିରୁ ଏହି ସିଦ୍ଧାନ୍ତ କରାଯାଇଅଛି ଯେ ଅପେକ୍ଷାକୃତ ଶିକ୍ଷିତ ଯୁବକମାନେ ଉତ୍ତମ ଫଳ ନ ପାଇବାର ପ୍ରଧାନ ଅନ୍ତରାୟମାନଙ୍କ ମଧ୍ୟରୁ ମନ୍ଦପଠନ ଅଭ୍ୟାସହିଁ ଅନ୍ୟତମ ।

ଦ୍ରୁତପଠନ ଶିକ୍ଷା କରିବା ସମ୍ପର୍କରେ କେତେକ ମୌଳିକ ବିଷୟ ସ୍ମରଣ ରଖିବା ଉଚିତ । ସେଗୁଡ଼ିକ ଅତି ସାଧାରଣ କଥା ସଦୃଶ ବୋଧହେଲେ ମଧ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ । ଅନେକ ସମୟରେ ସେଗୁଡ଼ିକୁ ଲୋକ ଭୁଲିଯାଇଥାଏ । ପ୍ରଥମତଃ ଏହା ହୃଦୟଙ୍ଗମ କରିବାକୁ ହେବ ଯେ ଲେଖକ ଯାହା କହୁଛନ୍ତି ତାକୁ ବୁଝିବା ପଠନର ମୁଖ୍ୟ ଉଦ୍ଦେଶ୍ୟ । ଶବ୍ଦ ସମଷ୍ଟିହିଁ ଭାବର ବାହକ—ପୃଥକ ପୃଥକ ଶବ୍ଦ ନୁହନ୍ତି । ଏଣୁ ଯଦି ଆପଣ ପ୍ରତ୍ୟେକ ଶବ୍ଦପାଇଁ କିଛି କିଛି ସମୟ ନିଅନ୍ତି ତେବେ ଶେଷରେ ହୁଏତ ଆପଣ ଭାବର ପ୍ରାଧାନ୍ୟ ଧରିପାରିବେ ନାହିଁ । ତେଣୁ ଉତ୍ତମ ପାଠକ ଶବ୍ଦ ସମଷ୍ଟିକୁହିଁ ଗ୍ରହଣ କରିବା ଉଚିତ । ଦ୍ୱିତୀୟତଃ ଗୋଟିଏ ଗୋଟିଏ ପଂକ୍ତିରେ କେବଳ ଭାବ ସାଧାରଣତଃ ନିବଦ୍ଧ ହୋଇ ନଥାଏ । ସୁତରାଂ ଯଦି ପ୍ରତ୍ୟେକ ପଂକ୍ତିର ଅର୍ଥ ବିଚାର କରିବା ପାଇଁ ଆପଣ ରହି ରହି ଗତି କରନ୍ତି ହୁଏତ ପ୍ରଧାନ ବିଷୟ-ବସ୍ତୁକୁ ଶେଷରେ ମଧ୍ୟ ଆପଣ ହରାଇ ପାରନ୍ତି ।

ଆପଣଙ୍କର ପଠନ ବେଗ ବୃଦ୍ଧିପାଇଁ ଆପଣ କଣ କରି ପାରିବେ ? କୌଣସି ରିଡ଼ିଂ କ୍ଲିନିକ୍‌ରେ ନାମ ଲେଖାଇବା ସବୁଠାରୁ ଭଲ । ଦୁର୍ଭାଗ୍ୟ ବଶତଃ ଆମ ଦେଶରେ ରିଡ଼ିଂ ସ୍କୁଲ ବା କ୍ଲିନିକ ନାହିଁ । କିନ୍ତୁ ଆମେ ନିଜକୁ ସାହାଯ୍ୟ କରିବା ନିମିତ୍ତ କଣ କରି ପାରିବା ସେ ବିଷୟ ଆଲୋଚନା କରିବା ପୂର୍ବରୁ ରିଡ଼ିଂ କ୍ଲିନିକ୍‌ରେ କଣ ହୁଏ ଜାଣିବା ଉଚିତ ।

କ୍ଲିନିକର ଶିକ୍ଷକମାନେ ଦ୍ରୁତ ପଠନ ଶୈଳୀ ଶିଖାଇବା ପାଇଁ ଏକାଧିକ ଯାନ୍ତ୍ରିକ ଉପାୟର ସାହାଯ୍ୟ ନେଇଥାଆନ୍ତି । ଏମାନଙ୍କ ମଧ୍ୟରୁ ରିଡ଼ିଂ ଆକ୍‌ସିଲେରେଟର ଅନ୍ୟତମ । ଏହା ପୃଷ୍ଠା ଉପର ଦେଇ ଏକ ପରଦାକୁ ଏପରି ବେଗରେ ଟାଣିଆଣେ ଯେ ଏହାକୁ ବଳିଯିବା ପାଇଁ ବା ଏହାର ଆଗରେ ରହିବା ପାଇଁ ଛାତ୍ର ଶୀଘ୍ର ଶୀଘ୍ର ପଢ଼ିବାପାଇଁ ବାଧ୍ୟ । ଛାତ୍ର କ୍ରମଶଃ ଉନ୍ନତି କରିବା ସଙ୍ଗେ ସଙ୍ଗେ ଏହି ବେଗ ବଢ଼ାଯାଇଥାଏ । ଆଉ ଏକ ଯନ୍ତ୍ର Opthalmograph; ଏହା ଏକ ଫିଲ୍ମ ଉପରେ ଛାତ୍ରର ଆଖିର ଚଳନାକୁ ଆଙ୍କି ଦିଏ ଏବଂ ଶିକ୍ଷକଙ୍କୁ ଛାତ୍ର ସମ୍ପର୍କରେ ଉପାଦେୟ ବିବରଣୀ ଦେଇପାରେ । ତା ପରେ Tachistoscope । ଏହି ଯନ୍ତ୍ରଟି ଛାତ୍ର ସମ୍ମୁଖରେ ଶବ୍ଦ, ବାକ୍ୟାଂଶ ଆଦି ମିନିଟକ ଶତାଂଶ ସମୟ ମଧ୍ୟରେ ଝଲସାଇ ଦେଇ ପାରେ । ଅତି ଶୀଘ୍ର ଶବ୍ଦ ଓ ଶବ୍ଦ ସଂହତିକୁ ଗ୍ରହଣ କରିବା ନିମନ୍ତେ ଏତଦ୍ଦ୍ୱାରା ଆଖିକୁ ତାଲିମ କରାଯାଇଥାଏ । ଆଖିକୁ ଲେଖା ଉପରେ ନିବଦ୍ଧ କରି ରଖିବାପାଇଁ ଏବଂ ହଠାତ୍ କୌଣସି ଏକ ପଂକ୍ତିକୁ ଆଖି ଗ୍ରହଣ କରିବା ପାଇଁ ଦୃଷ୍ଟି ପରିସରକୁ ବଢ଼ାଇବା ନିମିତ୍ତ ଓ ମାମୁଲି ପଠନ ବ୍ୟତିକ୍ରମକୁ ସଂଶୋଧନ କରିବା ନିମିତ୍ତ ଅନ୍ୟାନ୍ୟ ଯନ୍ତ୍ର ମଧ୍ୟ ବ୍ୟବହୃତ ହୋଇଥାଏ ।

ଏକ ମଜାର ବିଷୟ ଆବିଷ୍କୃତ ହୋଇଅଛି; ଯେ ସାଧାରଣତଃ ପଠନ ସମୟରେ ବାମ ଆଖି ଡାହାଣ ଆଖିର ପଛରେ ପଡ଼ି ଯାଇଥାଏ, କାରଣ ପାଶ୍ଚାତ୍ୟ-ଭାଷାଗୁଡ଼ିକ (ଏବଂ ଅନେକ ଭାରତୀୟ ଭାଷା ମଧ୍ୟ) ବାମରୁ ଡାହାଣକୁ ଲେଖା ଯାଇଥାଏ । ବାସ୍ତବରେ ଦ୍ରୁତ ପଠନ ନିମିତ୍ତ ସଂପ୍ରସାରିତ ଦୃଷ୍ଟି (full vision) ଆବଶ୍ୟକ । ଦୁଇଟି ଯାକ ଆଖି ଯେତେଦୂର ପାରନ୍ତି କୁଶଳ କାର୍ଯ୍ୟ କରିବା ଉଚିତ । ଏଠାରେ ପ୍ରଶ୍ନ ଉଠିପାରେ ଯଦି ଶୀଘ୍ର ଶୀଘ୍ର ପାଠ କରିବା ସମୟରେ ଆପଣ ଯାହା ପଢ଼ୁଛନ୍ତି ତାର ଅର୍ଥ ଆପଣଙ୍କ ପକ୍ଷେ ବୋଧଗମ୍ୟ ନ ହୁଏ ତେବେ ଶୀଘ୍ର ଶୀଘ୍ର ପଢ଼ିବାର ଅର୍ଥ କଣ ? ଅନେକ ପରୀକ୍ଷାରୁ ପ୍ରତିପନ୍ନ ହୋଇଛି ଯେ ଯେତେବେଳେ ଆପଣ ଦ୍ରୁତ ବେଗରେ ପାଠ କରିବା ଶିକ୍ଷା କରନ୍ତି ସେତେବେଳେ ମଧ୍ୟ ଆପଣ ଅଧିକ ଅଧିକ ଗ୍ରହଣ କରିବା ଶିକ୍ଷା କରିଥାଆନ୍ତି ।

( ୯ମ ପୃଷ୍ଠା ଦେଖନ୍ତୁ )

# ମାଛ

ଅଧ୍ୟାପକ ଡକ୍ଟର ଶ୍ରୀ ବସନ୍ତକୁମାର ବେହୁରା, ପି. ଏଚ୍. ଡ଼ି.

ଭାତ ଆମର ପ୍ରଧାନ ଖାଦ୍ୟ। ଏଥିରେ ଶ୍ୱେତ-ସାର (Starch) ପ୍ରଚୁର ପରିମାଣରେ ବିଦ୍ୟମାନ। ଆମ ଦେହରେ ବଳାଷ୍ଟ ଗଠନ ଓ ବୃଦ୍ଧିପାଇଁ ପ୍ରୋଟିନ୍ (Protein) ଉପଯୁକ୍ତ ପରିମାଣରେ ଆବଶ୍ୟକ। ଡାଲିରେ ଉଦ୍ଭିଜ୍ଜ ପ୍ରୋଟିନ୍ ଅଛି। ପ୍ରାଣୀଜ ପ୍ରୋଟିନ୍ ମାଛ, ମାଂସ, ଅଣ୍ଡା, ଦୁଧ ଆଦି ଖାଦ୍ୟରେ ପ୍ରଚୁର ପରିମାଣରେ ମିଳେ। ଏସବୁ ମଧ୍ୟରେ ମାଛ ସବୁଠାରୁ ଶସ୍ତା ଓ ସହଜ-ଲଭ୍ୟ। ଭାରତ ତଥା ଓଡ଼ିଶାର ସମଗ୍ର ଦକ୍ଷିଣ ଉପକୂଳ ସମୁଦ୍ର ପରିବେଷ୍ଟିତ। ତା ଛଡ଼ା ନଦୀ, ନାଳ, ଯୋର, ପୋଖରୀର ଅଭାବ ଆମ ଓଡ଼ିଶାରେ ନାହିଁ। ତଥାପି ଅତି ଦୁଃଖର କଥା, ଭାରତବାସୀ ତଥା ଓଡ଼ିଶାବାସୀ ଉପଯୁକ୍ତ ପରିମାଣରେ ମାଛ ଖାଆନ୍ତି ନାହିଁ। ନଷ୍ଟେଷ୍ଟତା ଏହାର ମୂଳ କାରଣ। ବିଶେଷଜ୍ଞମାନେ ହିସାବ କରି ଦେଖିଅଛନ୍ତି ଯେ ଭାରତରେ ଜଣକା ବାର୍ଷିକ ହାରାହାରି ବାଲେଶ୍ୱରୀ ଏକସେର ଦଶଛଟାଙ୍କି ମାଛ ଖାନ୍ତି ଓ ସେଥିରୁ ଅଧ-ସେର ମଧୁର ଜଳର ମାଛ। ଅଥଚ ବାର୍ଷିକ ଜଣକା ସିଂହଳରେ ଆଠସେର, ବର୍ମାରେ ପଇଁତିରିଶ ସେର ଓ ଜାପାନରେ ମହଣେ ପାଞ୍ଚସେର ମାଛ ଖାନ୍ତି। ମତ୍ସ୍ୟ-ଚାଷ ବିଶାରଦମାନଙ୍କ ମତରେ ଆମ ଭାରତରେ ଗୋଟିଏ ଏକର ଜମିରେ ଯେତେ ଓଜନର ଖାଦ୍ୟ ଉତ୍ପାଦିତ ହୁଏ, ସେତିକ ଜଳ ଜମିର ଉତ୍ତମ ତତ୍ତ୍ୱ ନେଇ ମାଛ ଚାଷ କଲେ, ସେତେ ଓଜନର ମାଛ ମିଳିପାରେ।

ମାଛରେ ସ୍ନେହ ପଦାର୍ଥ, ଫସ୍ଫରସ୍, କାଲସିୟମ୍ ଆଦି ବିଦ୍ୟମାନ। ଏସବୁ ଆମର ଶରୀର ଲାଗି ଅତି ଉପଯୋଗୀ। ସ୍ନେହ ପଦାର୍ଥର ପରିମାଣ ମାଛର ଖାଦ୍ୟ, ବର୍ଷର ସମୟ, ତାର ଅଣ୍ଡା ଦେବା କାଳ ଇତ୍ୟାଦି ଅନୁସାରେ ପରିବର୍ତ୍ତନଶୀଳ। ଶ୍ୱେତସାର ଓ ଶର୍କରା ମାଛରେ ଥାଏ ନାହିଁ। ସାନ ସାନ ମାଛ — ଯାହାର କଣ୍ଟା ଅର୍ଥାତ୍ ଅସ୍ଥି ଆମେ ଚୋବାଇ ଖାଉ — ଖାଇବା ଦ୍ୱାରା ଯଥେଷ୍ଟ ପରିମାଣରେ ଫସ୍ଫରସ୍ ଓ କାଲସିୟମ୍ ଆମ ଶରୀର ପାଇଁ ମିଳେ। ମାଛରେ ଲୌହର ପରିମାଣ ଅତ୍ୟନ୍ତ ଅଳ୍ପ। ତେବେହେଁ ଆମର ନଦୀ ଓ ପୋଖରୀର ମାଛରୁ ଆମ ଶରୀର ଉପଯୋଗୀ ଯଥେଷ୍ଟ ପରିମାଣରେ କାଲସିୟମ୍, ଫସ୍ଫରସ୍ ଓ ଲୌହ ମିଳେ। ତେଲ ବେଶୀ ଥିବା ମାଛରେ ମୂଲ୍ୟବାନ୍ ଜୀବସାର 'କ' ଓ 'ଘ' (Vitamin A,D) ଥାଏ। କେତେକ ମାଛର ଯକୃତ୍‌ରୁ ପ୍ରସ୍ତୁତ ତୈଳ (Liver oil) ଔଷଧ ବା ପୁଷ୍ଟିକର ଖାଦ୍ୟ ରୂପେ ବ୍ୟବହୃତ ହୁଏ। ସାଗରବାସୀ ମାଛମାନଙ୍କରେ ସାମାନ୍ୟ ପରିମାଣରେ ଆଇଓଡ଼ିନ୍ (Iodine) ମଧ୍ୟ ଥାଏ।

ମାଛର ଗନ୍ଧ ଆଇଁଷିଣିଆ। ମାଛ ତୁଳନାରେ ମାଂସର ଗନ୍ଧ ଅଳ୍ପ ଆଇଁଷିଣିଆ ଓ ରାନ୍ଧିଲେ ସ୍ୱାଦୁ ଗନ୍ଧ ହୁଏ। ତେଣୁ ମାଛ ଉତ୍ତମ ରନ୍ଧନ ଆବଶ୍ୟକ କରେ। ଭଲକରି ରାନ୍ଧି ନ ଜାଣିଲେ ତାର ଗନ୍ଧ ଯାଏନାହିଁ। ମାଛକୁ ରାନ୍ଧିଲେ ସେଥିରେ ଥିବା ପ୍ରୋଟିନ୍ ଅତି ଅଳ୍ପ ପରିମାଣରେ ନଷ୍ଟ ହୁଏ। ଆହୁରି କୌତୂହଳର ବିଷୟ ମାଛ ଭାଜିଲେ ସେଥିରେ ଥିବା ସମସ୍ତ ଖାଦ୍ୟ ଗୁଣ ଅତୁଟ ରହେ। ମାଛକୁ ଭାଜିଲେ ସେଥିରେ ସ୍ନେହ ପଦାର୍ଥର ପରିମାଣ ଅଧିକ ହୁଏ। ଯେଉଁମାନଙ୍କର ପାକଯନ୍ତ୍ର ଉତ୍ତମରୂପେ କାର୍ଯ୍ୟ କରେ ନାହିଁ, ଅର୍ଥାତ୍ ଯେଉଁମାନଙ୍କର ପେଟରେ ଗୋଳମାଳ ଅଛି, ସେମାନଙ୍କ ପାଇଁ ଭଜାମାଛ ଉପଯୋଗୀ ନୁହେଁ। ମାଛ ରାନ୍ଧିବାରେ ଭିନେଗାର ବ୍ୟବହାର କଲେ ଦୋଷ ନାହିଁ। ମାଛକୁ ଭାଜିବା ବା ସନ୍ତୁଳିବା ତୁଳନାରେ ସିଝାଇଲେ ଅପେକ୍ଷାକୃତ ଅଧିକ ପ୍ରୋଟିନ୍ ନଷ୍ଟ ହୁଏ।

ଯେଉଁ ମାଛରେ ତେଲର ପରିମାଣ ବେଶୀ ନୁହେଁ, ତାହା ଖାଦ୍ୟ ପାଇଁ ଅଧିକ ଉପଯୋଗୀ ଓ ତାହା ସହଜରେ ହଜମ ହୁଏ । ଅବଶ୍ୟ ଯେଉଁ ମାଛରେ ତେଲ ବେଶୀ, ସେଥିରେ ଖାଦ୍ୟ-ପଦାର୍ଥର ପରିମାଣ ଅଧିକ । ଟଟକା ମାଛ ତୁଳନାରେ ଡାମ୍ପଡ଼ା, ଶୁଖୁଆ ଓ ଟିଣରେ ସଂରକ୍ଷିତ ମାଛ ହଜମ ହେବାକୁ ଅଧିକ ସମୟ ଲାଗେ । ମାଛର ଚମଡ଼ା ସୁଆଦିଆ ଓ ଯେତେଦୂର ସମ୍ଭବ ନ ପୋପାଡ଼ି ଖାଇବା ଉଚିତ ।

---

# ବିଶାଳ ସାଲଗମର କାହାଣୀ

କୁମାର ତ୍ରିପୁରାରି ବାରିକ

ବହୁଦିନ ତଳେ…! ଥିଲା ଗୋଟିଏ ଚଷୀ । ବଡ଼ ଗରିବ ସେ । ବୟସ ତାର ଗଡ଼ି ଯାଇଥିଲା । ସେ ବୁଢ଼ା ହୋଇ ସାରିଥିଲା । ସେ କେବଳ ସାଲଗମ୍‌ର ଚାଷ କରେ । ତା' ଛଡ଼ା ତାର ଆଉ କିଛି ରୋଜଗାର ନ ଥିଲା ।

ତା' ଘର ପାଖେ ସେ ରାଜ୍ୟର ଜମିଦାର ରହନ୍ତି । ସେ ବଡ଼ ଦୟାଳୁ । ଗରିବ ଚଷା ବୁଢ଼ାଟି ଉପରେ ତାଙ୍କର କୃପାଦୃଷ୍ଟିଟା ବେଶୀ ।

ଜମିଦାରଙ୍କ ପଲ ପଲ ଘୁଷୁରି ଆଉ ମେଣ୍ଢା । ସୂର୍ଯ୍ୟ ନ ଉଇଁଣୁ ଦେଖିବ ଜମିଦାରଙ୍କର ମେଣ୍ଢା ସେଇ ଗରିବ ଚଷାର ବଗିଚାରେ ହାଜର । କଅଁଳ ଲସ ଲସ ଶାଗୁଆ ସାଲଗମ୍ ପତ୍ର…। ମେଣ୍ଢା ତାଙ୍କ ଆଦି ଚୋବାଇ ସାଫ୍ କରି ଦିଅନ୍ତି । ତା' ପଛରେ ପଶନ୍ତି ତାଙ୍କର ଘୁଷୁରି ! ଏମାନେ ଥୋମଣିରେ ମାଟି ତାଡ଼ି ମୂଳ ଖୋଳି ଦିଅନ୍ତି । ଚୋବାଇ ଖାଆନ୍ତି ରଡ଼…ମଡ଼…ରଡ଼…ମଡ଼… ।

ଶେଷରେ ରହିଲା ଗୋଟେ ଶ୍ରେଷ୍ଠ ସାଲଗମ, ଚଷୀ-ବୁଢ଼ା ଏହାକୁ ପରମ ଆନନ୍ଦରେ ପାଳିଲା । ଠିକ୍ ଭାବେ ଦେଲା ପାଣି । ପ୍ରଚୁର ଦେଲା ସାର । ନିଅଁ ନେଲା ତାର ଯତ୍ନ । ଆସିଲା କୁହୁଡ଼ି…ପଡ଼ିଲା ବରଫ…। ହେଲେ ବୁଢ଼ାଟି ଆଉ ସାଲଗମ୍‌କୁ ଉପାଡ଼ ଦେଲାନି । ତା'ର ମନ ତ ହେଲାନି ଆଦୌ—

ସେଇ ସାଲର ବସନ୍ତ ସମୟ । ସେତିକବେଳେ ସେ ସାଲଗମ୍‌ଟିକୁ ଉପାଡ଼ିଲା । ସେତେବେଳକୁ ଦଶ-ଜଣ ବସିବା ଭଳି ଗୋଟିଏ ଟେବୁଲ ପରି ହୋଇ ଯାଇଥାଏ ସାଲଗମ୍‌ଟି…

ସେ ଅଞ୍ଚଳର ମାଜିଷ୍ଟ୍ରେଟ ଆସିଲେ । ତାଙ୍କ ପାଲିଙ୍କିକୁ ଆଠ ଜଣ ଲୋକ ବୋହି ଆଣିଲେ । "ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !" ଯେତେବେଳେ ସେ ସାଲଗମ୍‌ଟିକୁ ଦେଖିଲେ ବିସ୍ମୟରେ କହି ପକାଇଲେ ।

"ଚମତ୍କାର ! ଚମତ୍କାର !" ପାଳି ଧରିଲେ ସଙ୍ଗରେ ଆସିଥିବା କର୍ମଚାରୀମାନେ ।

"କୌତୁକମୟ" ! ନିକଟରେ ରହିଥିବା ଜମିଦାର ଯୋଗ କଲେ ।

ମାଜିଷ୍ଟ୍ରେଟ ଜଣକ କହିଲେ—"ତମେ ନିଶ୍ଚୟ ସମ୍ରାଟଙ୍କୁ ସାଲଗମ୍‌ଟି ଦେଇ ଦେବା ଉଚିତ"……

"ମାନେ ଆପଣ କହୁଛନ୍ତି—ମୁଁ ଛାଡ଼ି ଦେବି ? ବୁଢ଼ା ଅନୁଯୋଗ କଲା ।

"ତୋ ପରି ନୀଚ ଶ୍ରେଣୀର ଲୋକ-ଏପରି ରତ୍ନ ଉପଭୋଗ କରିବାର ଅଧିକାରୀ ନୁହେଁ" ମାଜିଷ୍ଟ୍ରେଟ ପାଟିକରି ଉଠିଲେ । "ହଁ ଶୁଣ…ତୁ ଏଇ ମୁହୂର୍ତ୍ତରେ ସମ୍ରାଟଙ୍କ ନିକଟକୁ ନେଇ ଯା'—ନଚେତ୍ ଅବାଧ୍ୟ ହେବାର ଫଳ କ'ଣ ହୁଏ ମୁଁ ତା' ଦେଖାଇ ଦେବି !"

ମାଜିଷ୍ଟ୍ରେଟ ସମ୍ରାଟଙ୍କୁ ଦେଖାକଲେ । "ଶ୍ରୀ ହଜୁରଙ୍କ ପ୍ରଭାବପୂର୍ଣ୍ଣ ଏବଂ ଜ୍ଞାନଦୀପ୍ତ ଶାସନ ଯୋଗୁଁ ଏ ଦେଶରେ ଦୈବାନ୍ତ ଆଶୀର୍ବାଦ ରୂପରେ ଏଇ ସାଲ୍-ଗମ୍‌ଟି ଦେଖା ଦେଇଛି…! ସୁତରାଂ ହଜୁରଙ୍କ

କୌଣସି ପ୍ରଜା ଏହାର ଅଧିକାରୀ ହେବାକୁ ହକ୍‌ଦାର ନୁହନ୍ତି—ଏକା ହଜୁରଙ୍କ ଛଡ଼ା ! ମୁଁ ଚଷା ବୁଢ଼ାକୁ ଆଦେଶ ଦେଇ ସାରିଚି ଯେ—ଆପଣଙ୍କ ସମ୍ମାନ ପାଇଁ ଭେଟି ଦେବାକୁ ବାଧ !”......ଇତ୍ୟାଦି... ଇତ୍ୟାଦି...ସେ କହିବାକୁ ଲାଗିଲେ......।

ଏତେ ଗୁଡ଼ାଏ ପ୍ରଶଂସା ବାକ୍ୟରେ ସମ୍ରାଟ ଖୁସି ହୋଇଗଲେ । କିନ୍ତୁ ଏଇ ବିରାଟ ସାଲଗମ୍‌ଟିକୁ ନେଇ କ’ଣ ଯେ କରିବାକୁ ହେବ ତା’ ସେ ଜାଣି ନ ଥିଲେ । ତଥାପି ସେ ଗ୍ରହଣ କଲେ । ମାଜିଷ୍ଟ୍ରେଟଙ୍କୁ ଉପର ପାହ୍ୟାକୁ ଉଠାଇ ଦେଲେ । କୃଷୀ ବୁଢ଼ାକୁ ମଧ କିଛି ମଣି ମାଣିକ୍ୟ ଦେବାକୁ ଆଦେଶ ଦେଲେ ।

ଚାକରମାନେ ବଡ଼ ସାଲ୍‌ଗମ୍‌ଟିକୁ କୃଷୀ ବୁଢ଼ାଠାରୁ ରାଜବାଟୀ ଆଡ଼କୁ ନେଇଗଲେ । ଏହା ଦେଖି ବୁଢ଼ାର ମନ ମରିଗଲା । କ’ଣ କରିବ ସେ ଏଇ ରତ୍ନ ନେଇ ? ଖାଇବ ? ପାରି-ବନି ? ବିକିବ ? ସାହସ ନାହିଁ ! ସମ୍ରାଟ ଦେଇଚନ୍ତି ହାତରୁ ବି’ହାତ କପର କରିବ ?

ଜମିଦାର ଏ ସବୁ ଦେଖିଲେ । “ଆରେ ବୁଢ଼ାଟା କେଡ଼େ କପାଳଆ ମ !” ସେ ଭାବିଲେ । “ଖାଲି ଗୋଟେ ଗୁର ସାଲ୍‌ଗମ୍ ! ତା’ପାଇଁ ଦେଖ କେତେ ସେ ରତ୍ନ ପାଇଚ, ମୋର କିଛି ମୂଲ୍ୟବାନ୍ ଜିନିଷ—ଭେଟିବାକୁ ଥାଆନ୍ତା କି ?” ଈର୍ଷାରେ ସେ ଜଳି ପୋଡ଼ିବାକୁ ଲାଗିଲେ............।

ରାତିଦିନ ଖାଲି ତାଙ୍କର ଏଇ ଚିନ୍ତା । ତାଙ୍କୁ ଆଉ ନିଦ ନାହିଁ...ସେ ସବୁ ଭୁଲିଗଲେ—ଶେଷରେ ସେ ପ୍ରାୟ ପୀଡ଼ିତ ହୋଇ ପଡ଼ିଲେ । ହଠାତ୍ ତାଙ୍କ ମୁଣ୍ଡକୁ ଗୋଟିଏ କଥା ଆସିଲା । ବର୍ତ୍ତମାନ ସେ ମ୍ୟାଜିଷ୍ଟ୍ରେଟ୍ ପାଖକୁ ଗଲେ । ( ବର୍ତ୍ତମାନ ସେ ଜଣେ ଉଚ୍ଚ ପାହ୍ୟା କର୍ମଚାରୀ ) ତାଙ୍କୁ ପୁଳାଏ ଲାଞ୍ଚ ଦେଇ ଆଉ ଥରେ ସମ୍ରାଟଙ୍କୁ ଭେଟ କରିବାକୁ ମଗାଇ ନେଲେ ।

ଏ ଭିତରେ ଏଭଳି ଗୋଟିଏ ସାଲ୍‌ଗମ୍ ପାଇ ସମ୍ରାଟ ବଡ଼ ଚିନ୍ତିତ ଏବଂ ଦୁଃଖିତ ଥାଆନ୍ତି । ଏ ଜିନିଷଟି ଯେ ବେଶୀ ମୂଲ୍ୟର ନୁହେଁ—ଏହାହିଁ ତାଙ୍କର ଚିନ୍ତା ଏବଂ ଦୁଃଖର କାରଣ । ସୁତରାଂ ଯେତେବେଳେ ସେ ନୂଆ କଥାଟି ଶୁଣିଲେ ସେ ଆଶ୍ଚର୍ଯ୍ୟ ହୋଇଗଲେ । ଆଉ ପୁଣି କିଏ ତାଙ୍କୁ ଠକିବାକୁ ଆସୁଚି ! ଏଁ...ଏଁ... !

ଜମିଦାର ଭିତରକୁ ଆସିଲେ । “ତମେ ମୋ’ପାଇଁ କିଣ ଆଣିଚ ?” କର୍କଶ ଗଳାରେ ସମ୍ରାଟଙ୍କ ପ୍ରଶ୍ନ ।

ଶ୍ରୀ ହଜୁରଙ୍କ ସେବାପାଇଁ “ମୁଁ ମୋର ନିଜ ଝିଅଟିକୁ ଆଣିଚି ଆଜ୍ଞା ।” ଧୀର ଆଉ ନରମ ଗଳାରେ ଉତ୍ତର ଦେଲେ ଜମିଦାର । ତା’ପରେ... ସାଷ୍ଟାଙ୍ଗ ପ୍ରଣିପାତ କଲେ ସେ ।

ସମ୍ରାଟ ଝିଅକୁ ଦେଖିଲେ । ସେ ବେଶ୍ ସୁନ୍ଦରୀ । ବାପର ପଛ ପାଖେ ସେ କାନ୍ଦୁଥିଲା । ସମ୍ରାଟ ଏ ସୁନ୍ଦର ଝିଅଟିକୁ ଦେଖି ଖୁବ୍ ଖୁସି ହୋଇଗଲେ । ନାରୀମହଲକୁ ନେଇଯିବାକୁ ସଙ୍ଗେ ସଙ୍ଗେ ସେ ଆଦେଶ ଦେଲେ ।

“ମୁଁ ତମକୁ ଅମୂଲ୍ୟ ରତ୍ନ ଉପହାର ଦେଉଚି...।” ସେ ଜମିଦାରଙ୍କୁ ଚାହିଁ କହିଲେ । ଗୋଟିଏ ଆଦେଶପତ୍ର ସଙ୍ଗେ ସଙ୍ଗେ ପଠାଇ ଦେଲେ ସମ୍ରାଟ ।

“କି ରତ୍ନଟିଏ ପାଇବି...” ଏଇ କଥାଟି ଚିନ୍ତା କରିବା ଆଗରୁ ସେ — ସପୁଆଳ ସାଲ୍‌ଗମ୍‌ଟିକୁ ଆଣି ତାଙ୍କ ଆଗରେ ରଖାଗଲା । ଆଉ କିଛି କରିବାର ନାହିଁ... ସେ ନେବାକୁ ବାଧ । ସୁତରାଂ ତାକୁ ବାଧ ହୋଇ ନେଲେ । ନିଜର ବଡ଼ କୋଠାର ଅଗଣାରେ ଏଇଟିକୁ ରଖିଦେଲେ ବିରକ୍ତିରେ । ତାକୁ ଫିଙ୍ଗିଲେ ନିକି ଖାଇଲେ ନି... !

“ସମ୍ରାଟ ! ଜମିଦାର !” ସେ ବୁଢ଼ାଟି ଯେତେବେଳେ ଶୁଣିଲା ଯେ ଜମିଦାରଙ୍କ ଘରେ ତାର ସେଇ ସାଲ୍‌ଗମ୍‌ଟି ନଷ୍ଟ ହେଉଚି, ସେ କହିଲା—କାହାର କି ଉପକାର ହେଲା ?

ଆଉ ସେ ତା’ ଜମି ଖୋଳିବାରେ ଲାଗିଲା !

(ଏଇ ସୁନ୍ଦର କାହାଣୀଟି ଚାଇନା ଦେଶର ଗୋଟିଏ ‘ଲୋକ-ଗପ’ ବା ‘ଫୋକ୍‌ଟେଲ୍’ (Folk Tale)ର ଅନୁବାଦ ।)

(୫ମ ପୃଷ୍ଠାର ଅବଶିଷ୍ଟାଂଶ)

ଉଦାହରଣ ସ୍ୱରୂପ ନିଉୟର୍କ ବିଶ୍ୱବିଦ୍ୟାଳୟର ଦ୍ରୁତ ପଠନ ଶ୍ରେଣୀରେ ଭର୍ତ୍ତିହୋଇଥିବା ଛାତ୍ରମାନେ ସାଧାରଣତଃ ମିନିଟକେ ୨୦୦ ରୁ ୨୫୦ ପର୍ଯ୍ୟନ୍ତ ଶବ୍ଦ ପଢ଼ି ପାରୁଥାନ୍ତି ଏବଂ ଯାହା ପଢ଼ନ୍ତି ତାର ଶତକଡ଼ା ୫୦ । ୬୦ ଭାଗ ବୁଝିପାରନ୍ତି । ମାତ୍ର ୩୦ ଘଣ୍ଟାରୁ ଅଳ୍ପ ସମୟର ତାଲିମ ମଧ୍ୟରେ ସାଧାରଣ ଛାତ୍ର ମିନିଟକେ ଅତି କମ୍‌ରେ ୬୦୦ ଶବ୍ଦ ପଢ଼ିପାରେ ଏବଂ ଯାହା ପଢ଼େ ତାର ୮୦ । ୯୦ ଭାଗ ବୁଝିପାରିଥାଏ । ଏହା ଏକ ଚମକପ୍ରଦ ବିଷୟ । ଏହି ଫଳ ମଧ୍ୟ ଅନ୍ୟାନ୍ୟ ରିଡ଼ିଂ କ୍ଲିନିକ୍ ମାନଙ୍କଦ୍ୱାରା ସମର୍ଥିତ ।

ଦ୍ରୁତପଠନ ଦକ୍ଷତା ବୃଦ୍ଧି କରିବାରେ ବୟସର କୌଣସି ସମ୍ପର୍କ ନାହିଁ । ଅଧିକାଂଶ କ୍ଲିନିକ୍ ଲକ୍ଷ୍ୟ କରିଛନ୍ତି ଯେ ୨ ଜଣ ଛାତ୍ର ମଧ୍ୟରେ ବୟସ ତାରତମ୍ୟ ୩୦ ବର୍ଷରୁ ଊର୍ଦ୍ଧ୍ୱ ଥିଲେ ମଧ୍ୟ ଫଳାଫଳ ପ୍ରାୟ ସମାନ ଦେଖାଯାଏ । ଏଥିରୁ ବୁଝାଯାଉଛି ଯେ ପ୍ରତ୍ୟେକେ ଅଧିକ ପରିଶ୍ରମ ନ କରି ମଧ୍ୟ ନିଜର ପଠନ ବେଗ ଶତକଡ଼ା ୧୦୦ ବଢ଼ାଇ ପାରିବେ ଏବଂ ପ୍ରଧାନ ବିଷୟ ଏହି ଯେ ନିଜର ବୁଝିପାରିବାର କ୍ଷମତା ମଧ୍ୟ ବଢ଼ାଇ ପାରିବେ ।

ଶେଷୋକ୍ତ ବିଷୟଟି ଉପରେ ଅବଶ୍ୟ ଗୁରୁତ୍ୱ ଆରୋପ କରାଯାଇ ପାରିବ ନାହିଁ କାରଣ ଅନେକ ଲୋକ କୌଣସି ବିଷୟପ୍ରତି ଅଧିକ ଧ୍ୟାନ ଦେଇ ଅଧିକ ଯତ୍ନପୂର୍ବକ ମନେ ରଖିବାକୁ ଚେଷ୍ଟା କରି ପାଠ କରନ୍ତି ମାତ୍ର ଠିକ୍ ପଢ଼ିସାରିବାର ପରେ ପରେ ପ୍ରଧାନ କଥାଗୁଡ଼ିକୁ ମଧ୍ୟ ମନେ ରଖି ପାରନ୍ତି ନାହିଁ । କେତେଘଣ୍ଟା ବା କେତେଦିନ ପରେ ତାଙ୍କର ଆଉ କିଛି ମନେ ନ ଥାଏ ।

ରିଡ଼ିଂ କ୍ଲିନିକ୍‌ରେ ଯୋଗଦେବା ସୌଭାଗ୍ୟରୁ ବଞ୍ଚିତ ଲୋକମାନଙ୍କ ନିମିତ୍ତ ତଳେ କେତେଗୁଡ଼ିଏ ସୂଚନାର ଉଲ୍ଲେଖ କରାଯାଇଛି ।

୧ । କୌଣସି ଗୋଟିଏ ପୃଷ୍ଠା ବା କେତେକ ପୃଷ୍ଠାରେ ଥିବା ଶବ୍ଦ ସଂଖ୍ୟା ଗଣନା କରନ୍ତୁ ଏବଂ ସେ ସବୁକୁ ପାଠ କରିବା ନିମନ୍ତେ ନିଜପାଇଁ ନିଜେ ଏକ ସମୟ ନିର୍ଦ୍ଧାରଣ କରନ୍ତୁ । ଗୋଟିଏ ଷ୍ଟପ୍ ୱାଚ୍ ବା ଆଲାର୍ମ ଘଣ୍ଟା ବ୍ୟବହାର କରନ୍ତୁ ।

୨ । ଶବ୍ଦସମଷ୍ଟି ଓ ପୂର୍ଣ୍ଣ ବାକ୍ୟମାନ ଉପରେ ଚଞ୍ଚଳ ଚଞ୍ଚଳ ଆଖିମାରି ନେବା ଶିକ୍ଷା କରନ୍ତୁ ଅଥଚ ଏହାର ଅର୍ଥ ଗ୍ରହଣ କରିବାରେ ନିଶ୍ଚିତ ହୁଅନ୍ତୁ ।

୩ । ଯେତେବେଳେ ଗୋଟିଏ ଅଂଶ ଆପଣ ଅତି କ୍ଷିପ୍ର ବେଗରେ ପଢ଼ି ସାରିବେ ଅଳ୍ପକ୍ଷଣ ରହିଯାଇ ଯାହା ପଢ଼ିଲେ ମନ ମଧ୍ୟରେ ତାର ସଂକ୍ଷେପଣ କରନ୍ତୁ ।

୪ । ପଛକୁ ଫେରନ୍ତୁ ନାହିଁ ବା ଶବ୍ଦ, ବାକ୍ୟାଂଶ ବା ବାକ୍ୟ ପୁନରାବୃତ୍ତି କରନ୍ତୁ ନାହିଁ ।

୫ । କୌଣସି ସମ୍ବାଦପତ୍ର ପାଠ କରିବା ସମୟରେ କୌଣସି ସ୍ତମ୍ଭର ମଧ୍ୟ ଦେଇ ଏକ ସରଳରେଖା ଟାଣନ୍ତୁ ଏବଂ ଆପଣଙ୍କ ଆଖିକୁ ଏକ ସମୟରେ ଉକ୍ତ ରେଖାର ବାମ ଓ ଡାହାଣ ପାଖ ପଢ଼ିବାକୁ ଲଗାନ୍ତୁ । ଏହା ଅଭ୍ୟାସ ପରେ ଅତି ସହଜ ବୋଧ ହୁଏ ।

୬ । ଲେଖକଙ୍କର ପୁନରାବୃତ୍ତିକୁ ଛାଡ଼ି ଛାଡ଼ି ଯିବାକୁ ଚେଷ୍ଟା କରନ୍ତୁ । ଆସ୍ତେ ଆସ୍ତେ କଣ ଗୁରୁତ୍ୱପୂର୍ଣ୍ଣ, କଣ ନୁହେଁ ବା କଣ ପ୍ରଧାନ, କଣ ଅପ୍ରଧାନ ଆପଣ ଜାଣି ପାରିବେ ।

୭ । ମନ୍ଥର ପାଠକମାନଙ୍କର ଶବ୍ଦଜ୍ଞାନ ଅଳ୍ପ । ଏଥିରୁ ଏହା ନିଷ୍ପନ୍ନ ହୋଇଛି ଯେ ଯଦି ଆପଣଙ୍କର ଶବ୍ଦଜ୍ଞାନ ଅଧିକ ଥାଏ ଦ୍ରୁତ ପଠନ ନିମିତ୍ତ ଆଗ୍ରହ ମଧ୍ୟ ଆପଣଙ୍କର ଅଧିକ ଥିବ । ଅଜଣା ଶବ୍ଦଗୁଡ଼ିକୁ କେବେହେଲେ ହେଳା କରି ଚାଲିଯାଆନ୍ତୁ ନାହିଁ ।

ଯଦି ଆପଣ ଉପରୋକ୍ତ ସୂଚନାଗୁଡ଼ିକ ଅନୁସରଣ କରନ୍ତି ତେବେ ଆପଣ କାହିଁକି ଯେ ଆପଣଙ୍କର ପଠନ ବେଗ ନ୍ୟୂନପକ୍ଷେ ଶତକଡ଼ା ୧୦୦ ବଢ଼ାଇ ନ ପାରିବେ ଏହାର କୌଣସି କାରଣ ନାହିଁ । ମାତ୍ର ନିରବଚ୍ଛିନ୍ନ ଅଭ୍ୟାସ ଆବଶ୍ୟକ । କ୍ଷିପ୍ର ପଠନଦକ୍ଷତା

# ଫୁଲର ରଙ୍ଗ [୨]

ଡକ୍ଟର ଶ୍ରୀ ବିଶ୍ୱନାଥ ସାହୁ ପି. ଏଚ୍. ଡ଼.

## ବର୍ଣ୍ଣର ମନସ୍ତାତ୍ତ୍ୱିକ ପ୍ରଭାବ—

ବର୍ଣ୍ଣର ମନସ୍ତାତ୍ତ୍ୱିକ ପ୍ରଭାବ ଖୁବ୍ ଅଧିକ । ଲାଲ, ହଳଦିଆ ଏବଂ ନାରଙ୍ଗ ବର୍ଣ୍ଣ ସକର୍ମିକ, ସବୁଜ, ନୀଳ ଏବଂ ଧୂମଳ ବର୍ଣ୍ଣ ଧୀର ବା ଅପ୍ରତିରୋଧୀ ।

ଲାଲ :— ରକ୍ତର ବର୍ଣ୍ଣ ଲାଲ । ସ୍ନେହ ଓ ଅନୁରାଗର ବର୍ଣ୍ଣ ଲାଲ । ପ୍ରତ୍ୟେକ ରାଷ୍ଟ୍ରବିପ୍ଳବୀ ଲାଲ ରଙ୍ଗକୁ ତାର ପ୍ରତୀକରୂପେ ଗ୍ରହଣ କରିଥାଏ । କାମଦେବଙ୍କୁ ଲାଲ ବର୍ଣ୍ଣରେ ଚିତ୍ରିତ କରାଯାଇଥାଏ । କିଂଶୁକ, ଅଶୋକ ଓ ଗୋଲାପ ପ୍ରେମ ଓ ପ୍ରୀତିସୂଚକ । ଲାଲରଙ୍ଗହିଁ ଆଦିବାସୀଙ୍କର ପ୍ରିୟତମ ବର୍ଣ୍ଣ । ଶିଶୁ ପ୍ରଥମେ ଲାଲବର୍ଣ୍ଣ ଚିହ୍ନିଥାଏ । ପକ୍ଷୀ ଲାଲବର୍ଣ୍ଣ ପୁଷ୍ପ ଓ ଫଳପ୍ରତି ଆକୃଷ୍ଟ ହୋଇଥାଏ ।

ହଳଦିଆ :— ବସନ୍ତଋତୁର ପ୍ରତୀକ । ଏହା ସ୍ନେହ ଓ ଶାନ୍ତିସୂଚକ । ବିଶ୍ରାମ କକ୍ଷ ହଳଦିଆ ବର୍ଣ୍ଣରେ ରଞ୍ଜିତ ହେଲେ ଅତି ମନୋରମ ଦିଶେ ।

ନାରଙ୍ଗ :—ଏହା ରକ୍ତ ଓ ହରିତ ବର୍ଣ୍ଣର ସମଷ୍ଟି । ତେଣୁ ଏହା ଅନୁରାଗ ଓ ପ୍ରେମ ପ୍ରକାଶ କରିଥାଏ । ମହାପୁରୁଷମାନଙ୍କର ଓ ଦେବଗଣଙ୍କ ମସ୍ତକ ସମ୍ମୁତ ତେଜଃପୁଞ୍ଜ ଚିତ୍ରଣରେ ନାରଙ୍ଗବର୍ଣ୍ଣ ବ୍ୟବହୃତ ହୋଇଥାଏ । ଗୋଲମହର, କର୍ଣ୍ଣିଆ, କଳଭଲା, ଅମଲତା, ପେଲ୍ଟୋଫୋରମ ଓ ଗେଣ୍ଡୁ ପୁଷ୍ପର ବର୍ଣ୍ଣ ହରିଦ୍ରାଭ ଏବଂ ଗୃହପ୍ରାଙ୍ଗଣ ଓ ପ୍ରମୋଦ ଉଦ୍ୟାନର ନିକୁଞ୍ଜ ଗଠନ ଲାଗି ଉତ୍କୃଷ୍ଟ । ହଳଦିଆ ପର୍ଦ୍ଦା ଓ ଗୃହ ଗମ୍ଭୀରତା ଦୂର କରି ସ୍ନେହପୂର୍ଣ୍ଣ ବାୟୁମଣ୍ଡଳ ସୃଷ୍ଟି କରିଥାଏ ।

ନୀଳବର୍ଣ୍ଣ:—ଶାନ୍ତ ଓ ପବିତ୍ରତାର ନିଦର୍ଶନ । ଏହା ଅନନ୍ତ ଓ ମହାକାଳର ପ୍ରତୀକ । ଖ୍ରୀଷ୍ଟ ଦେଶୀୟ ଚିତ୍ରକଳାରେ ବୁଦ୍ଧଦେବଙ୍କ ଅଙ୍ଗରୁ ବିଚ୍ଛୁରିତ ତେଜରଶ୍ମି ନୀଳବର୍ଣ୍ଣରେ ଚିତ୍ରିତ କରାଯାଇଥାଏ । ଗ୍ରୀଷ୍ମର ପ୍ରଚଣ୍ଡ ତାପ ବେଳେ ନୀଳବର୍ଣ୍ଣ ଅତି ପ୍ରଶମିତ ପ୍ରଭାବ ଆଣିଥାଏ । ତେଣୁ ଜାକରନ୍ଦ ଓ ଲଗ୍ନମ-ଭ୍ରଇଟି ଚୈତ୍ର-ବୈଶାଖ ମାସରେ ପୁଷ୍ପମଣ୍ଡିତ ହୋଇ ଗ୍ରୀଷ୍ମ ଦଗ୍ଧ ହୃଦୟରେ ଶାନ୍ତି ଆଣିଥାଏ ।

ଧୂମଳ:—ଏହା ଲାଲ ଓ ନୀଳ ବର୍ଣ୍ଣର ସମ୍ମିଶ୍ରଣରେ ଗଠିତ ବର୍ଣ୍ଣ । ସୁତରାଂ ଏହା ଗୋଟିଏ ଜଟିଳ ଓ ବହୁରୂପୀ ଗୁଣବିଶିଷ୍ଟ । ଏହା ଅନ୍ତରର ଉଦ୍ୟମ, ପ୍ରୟାସ ଏବଂ ସୃଷ୍ଟି ଓ ପ୍ରଳୟ ପ୍ରକାଶ କରେ । ବାଇଗଣ ରଙ୍ଗର ଗୁଳ୍ମ ଓ ତରୁ ଧୂମଳ ପୁଷ୍ପ ବହନ କରିଥାଏ । ବ୍ରୁହତି (Solanum indicum), ଅଶ୍ୱଗନ୍ଧା (Withania somnifera), ପେଟୁନିଆ ଓ ଜାକରନ୍ଦ ଧୂମଳ ପୁଷ୍ପରେ ସୁଶୋଭିତ ହୋଇଥାନ୍ତି । ତେଣୁ ଜାକରନ୍ଦ ସହ ବ୍ରୁହତି ଓ ଅଶ୍ୱଗନ୍ଧା ବଡ଼ ପ୍ରୀତିଦାୟକ ହୋଇଥାଏ ।

## ପରପ୍ରଷ୍ଟକାରୀ ଉପାଦାନ ଓ ପୁଷ୍ପର ରଙ୍ଗ—

ଅନେକ ସମୟରେ ଦେଖାଯାଇଥାଏ ଯେ ଗୋଟିଏ ଜାତିର ଫୁଲ ବେଳେବେଳେ ବହୁରୂପ ଧରିଥାଏ । ଉଦାହରଣ ସ୍ୱରୂପ "ହାଇଡ୍ରାଞ୍ଜିଆ" ପୁଷ୍ପ ଧରାଯାଉ । ଦେଖାଯାଇଛି ଯେ ଏହି ଫୁଲ ବେଳେବେଳେ ପାଟଳବର୍ଣ୍ଣ କିନ୍ତୁ ଅନ୍ୟବେଳରେ ନୀଳବର୍ଣ୍ଣ । ଗୋଟାଏ ବର୍ଷରେ ଏବଂ ଏକ ପଟାଳରେ କେତେକ ଗଛର

---

କେବଳ ଯେ ଆପଣଙ୍କର ଜ୍ଞାନ ବୃଦ୍ଧି କରିବ ତା ନୁହେଁ ଏତଦ୍ଦ୍ୱାରା ଆପଣ ଦାୟିତ୍ୱପୂର୍ଣ୍ଣ ଉଚ୍ଚ ପାହ୍ୟାର ଗୃକିରୀ ମଧ୍ୟ ପାଇ ପାରିବେ, କାରଣ ଅଳ୍ପ ସମୟରେ ବହୁତ କାମ କରିବାକୁ ସମର୍ଥ ହେବେ ।

(ଚଳିତ ବର୍ଷ ଜାନୁଆରୀ ୧୨ ତାରିଖ Sunday Hindustan Standard ର Educational forum ରେ Michael Sutton ଙ୍କ ପ୍ରକାଶିତ "How fast do you read" ର ଅବଲମ୍ବନରେ ।)

—o—

ଫୁଲ ପାଟଳ ଓ ଅନ୍ୟ କେତେ ଗଛର ଫୁଲ ନୀଳ । ଏହି ବର୍ଣ୍ଣ ବଦଳର ତଥ୍ୟ ଅନୁସନ୍ଧାନ କରାଯାଇଛି ଯେ କେତେକ ବିଶିଷ୍ଟ ଧାତୁର ସାନ୍ଦ୍ରତା ତାରତମ୍ୟ ଏହି ଆଶ୍ଚର୍ଯ୍ୟଜନକ ଘଟଣା ଘଟାଇଥାଏ । ଆଲୁମିନିୟମ୍ ଏବଂ ଲୌହ ଧାତୁ ଦୁଇଟିର ଉପସ୍ଥିତି ଓ ଅନୁପସ୍ଥିତି ଫୁଲର ବର୍ଣ୍ଣ ଉପରେ ପ୍ରଭୂତ ପ୍ରଭାବ ପକାଇଥାଏ । ଏହି ଦୁଇଟି ଧାତୁ ପ୍ରଚୁର ପରିମାଣରେ ରହିଲେ ଫୁଲର ବର୍ଣ୍ଣ "ନୀଳ," ମଧ୍ୟବର୍ତ୍ତୀ ମାତ୍ରା ଥିଲେ "ନୀଳଲୋହିତ" ଏବଂ ସ୍ୱଳ୍ପ ମାତ୍ରା ଥିଲେ "ପାଟଳ" ବର୍ଣ୍ଣ ହୋଇଥାଏ ।

ହାଇଡ୍ରାଞ୍ଜିଆ ଗଛର ଦୁଇଟି ଶାଖାରେ ଦୁଇଟି ଫୁଲ କଢ଼ ଥିଲା ଦୁଇଟି ଯାକର ବର୍ଣ୍ଣ ପାଟଳ ଥିଲା । ଦୁଇଟିରୁ ଗୋଟିକ ଉପରେ ହଜାର ଭାଗ ପାଣିରେ ପାଞ୍ଚଭାଗ "ଆଲୁମିନିୟମ୍ ଆମୋନିୟମ୍ ସାଇଟ୍ରେଟ" ଲବଣକୁ ଗୋଳି (0·5 percent solution) ପିଚକାରି ଦେବାରୁ ପାଟଳ ବର୍ଣ୍ଣ ବଦଳି ନୀଳ ବର୍ଣ୍ଣ ବିକଶିତ ହେଲା ।

ହାଇଡ୍ରାଞ୍ଜିଆ ଗଛକୁ (୧) ୧୦ ଲକ୍ଷ ଭାଗ ପାଣିରେ ୧·୩୪ ଭାଗ (1·34 PPM) ଆଲୁମିନିୟମ୍ ଧାତୁ ମିଶି ରହିଥିବା ପୁଷ୍ଟିକାରକ ମାଧ୍ୟମରେ ରଖି ବଢ଼ାଇଲେ ପାଟଳ ବର୍ଣ୍ଣ ଫୁଲ ଫୁଟେ । କିନ୍ତୁ (୨) ୧୦ ଲକ୍ଷ ଭାଗ ପାଣିରେ ୧·୩୪ ଭାଗ ଅର୍ଥାତ୍ ପ୍ରଥମ ମାତ୍ରାର ଦଶଗୁଣ ଆଲୁମିନିୟମ୍ ବଢ଼ାଇ ଦେଲେ ଫୁଲ ନୀଳଲୋହିତ ବର୍ଣ୍ଣ ଫୁଲ ଏବଂ (୩) ୧୦ ଲକ୍ଷ ଭାଗ ପାଣିରେ ୧୩୪ ଭାଗ ଅର୍ଥାତ୍ ପ୍ରଥମ ମାତ୍ରାର ଶହେଗୁଣ ଆଲୁମିନିୟମ୍ ବଢ଼ାଇ ଦେଲେ ଫୁଲ ନୀଳ ବର୍ଣ୍ଣ ହୋଇ ଫୁଟେ ।

ମୃତ୍ତିକାର ଅମ୍ଳ, କ୍ଷାର ଏବଂ ନୁହେଁ ଅମ୍ଳ କି ନୁହେଁ କ୍ଷାର ଅବସ୍ଥା ପୁଷ୍ପର ବର୍ଣ୍ଣ ଉପରେ ମଧ୍ୟ ପ୍ରଭାବ ଆଣିଥାଏ । ମୃତ୍ତିକାର କ୍ଷାର ଏବଂ ନୁହେଁ କ୍ଷାର କି ନୁହେଁ ଅମ୍ଳ ବା ନିଉଟ୍ରାଲ (ନିରପେକ୍ଷ) ଅବସ୍ଥାରେ ପୁଷ୍ପ ପାଟଳ ବର୍ଣ୍ଣ ଧରେ ଏବଂ ଅମ୍ଳ ଅବସ୍ଥାରେ ନୀଳବର୍ଣ୍ଣ ଧରିଥାଏ । କ୍ଷାର ଅବସ୍ଥାରେ ଲୌହ ତଥା ଆଲୁମିନିୟମ୍ ଦ୍ରବୀଭୂତ ହୋଇ ପାରେ ନାହିଁ କିନ୍ତୁ ଅମ୍ଳ ଅବସ୍ଥାରେ ଏହି ଧାତୁ ଦୁଇଟି ଦ୍ରବୀଭୂତ ହୋଇ ପୁଷ୍ଟିକାରକ ମାଧ୍ୟମରେ ସାନ୍ଦ୍ରଭାବରେ ରହେ ।

ଫୁଲ ପାଖୁଡ଼ା ରସରେ ଫୁଲର ବର୍ଣ୍ଣ ଅନୁପାତରେ ଆଲୁମିନିୟମ୍ ଅନୁପାତ ଅଳ୍ପ ବେଶୀ ଦେଖାଯାଏ । ନୀଳ ଫୁଲର ଏକଲକ୍ଷ ଭାଗ ରସରେ ୨୫୦ ଭାଗ, ପାଟଳ ଫୁଲ ରସରେ ୧୫୦ ଭାଗ ଏବଂ ନୀଳଲୋହିତ ଫୁଲ ରସରେ ୧୫୦ରୁ ୨୫୦ ଭାଗ ଆଲୁମିନିୟମ୍ ରହିଥାଏ । ମାଟିରେ ଆଲୁମିନିୟମ୍ ଧାତୁର ଅନୁପାତ ଯେତେ ଅଧିକ ହୁଏ, ଫୁଲର ରସରେ ଆଲୁମିନିୟମ୍ ଅନୁପାତ ସେତିକ ପରିମାଣରେ ବଢ଼ିଯାଏ ।

ଫୁଲର ବର୍ଣ୍ଣ ସହିତ ଲୌହ ଧାତୁର ସମ୍ବନ୍ଧ ଆଲୁମିନିୟମ୍ ଧାତୁ ପରି ତେତେ ଦେଖାଯାଏ ନାହିଁ ।

ପୁଷ୍ପର ବର୍ଣ୍ଣ ଏବଂ ଧାତୁର ସାନ୍ଦ୍ରତା ମଧ୍ୟରେ ଏପରି ନିଗୂଢ଼ ସମ୍ବନ୍ଧ ରହିଥିବାରୁ ଗୋଟାଏ ଗଛର ଚେରକୁ ତିନି ଚାରିଟି କୋଠରୀ ବିଶିଷ୍ଟ ପାତ୍ରରେ ବଢ଼େଇ ଏବଂ ପ୍ରତ୍ୟେକ କୋଠରୀରେ ବିଭିନ୍ନ ମାତ୍ରାର ଗୋଟିଏ ଧାତୁକୁ ରଖି ସେହି ଗଛରେ ତିନି ଚାରିଟି ବର୍ଣ୍ଣବିଶିଷ୍ଟ ପୁଷ୍ପ ଫୁଟା ଯାଇ ପାରେ । ଆଲୁମିନିୟମ୍ ଲବଣକୁ ପାଣିରେ ଗୋଳି ପାଖୁଡ଼ା ଉପରେ ପିଚ୍କାରୀ ଦେଲେ ମଧ୍ୟ ଏହିପରି ବିଭିନ୍ନ ବର୍ଣ୍ଣ ପ୍ରତିଭାତ ହୋଇଥାଏ ।



# ଓଡ଼ିଆ ଛାପା ଆହୁରି ଭଲ ହେବା ଉଚିତ

ଶ୍ରୀ ରାମକୃଷ୍ଣ ନନ୍ଦ

ଆମେ ଅନେକ ସମୟରେ ବହିର ଖଣ୍ଡେ ଭଲ ମଲାଟ ଦେଖିଲେ କହୁଥାଉଁ—'ଏ ବୋଧହୁଏ କଲିକତାରେ ଛପାହୋଇ ଆସିଛି ।' ଓଡ଼ିଶାରେ ଏତେଗୁଡ଼ାଏ ଛାପାଖାନା ଥାଉଁ ଥାଉଁ ଆମେ ଏପରି କହୁଁ କାହିଁକି ? ଆମର ଧାରଣା—ସୁନ୍ଦର ସୁଦୃଶ୍ୟ ଛାପା ଓଡ଼ିଶାରେ କୌଣସି ଛାପାଖାନାରେ ହେବା ସମ୍ଭବ ନୁହେଁ । ଆମର ଏ ଧାରଣା ଯେ ଭିତ୍ତିହୀନ ତା ନୁହେଁ । ବାସ୍ତବିକ ଭଲ ଛାପା ଏଠାରେ ସମ୍ଭବ ହେଉନାହିଁ ।

## ଭଲ ଛାପା କଣ ?

ବିଲାତ ଦେଶରେ ଛାପା ହୋଇଥିବା ଇଂରାଜି ବହି ଆମ୍ଭେମାନେ ଊଣା ଅଧିକେ ସମସ୍ତେ ଦେଖିଥାଉଁ । ସେ ବହିର ଛାପା ପ୍ରାୟ ନିର୍ଭୁଲ ଓ ନିର୍ଦ୍ଦୋଷ । ଛାପାରେ ମୁଦ୍ରଣ ପ୍ରମାଦ ନ ରହିବାର କାରଣ, କଳରେ କମ୍ପୋଜ ହୁଏ ଏବଂ ଶିକ୍ଷିତ ଲୋକମାନଙ୍କ ଦ୍ୱାରା ପ୍ରୁଫ୍ ଦେଖାଯାଏ । କୌଣସି କାମକୁ କଚାକରି ସେମାନେ କରନ୍ତି ନାହିଁ । ତେଣୁ ଛାପା ମଧ୍ୟ ରୁଚିକର ଓ ସୁଦୃଶ୍ୟ ହୁଏ । କଲିକତା, ବମ୍ବେ ପ୍ରଭୃତି ଭାରତର କେତେକ ବଡ଼ ବଡ଼ ସହରରେ ଏବେ କେତେକ ମୁଦ୍ରାକର ଭଲ ଛାପାପ୍ରତି ଦୃଷ୍ଟିଦେବା ଫଳରେ ଭାରତରେ ମଧ୍ୟ ସେହିପରି ସୁଦୃଶ୍ୟ ମୁଦ୍ରଣ ସମ୍ଭବ ହୋଇପାରିଛି ।

## ଓଡ଼ିଶାର ଅବସ୍ଥା

କଲିକତାରେ ବା ବମ୍ବେରେ ଯାହା ସମ୍ଭବ ହୋଇ ପାରୁଛି, ତାହା କଟକରେ, ପୁରୀରେ ବା ବ୍ରହ୍ମପୁରରେ ନ ହେବ କାହିଁକି ? ନିଶ୍ଚୟ ହୋଇ ପାରିବ । ହିନ୍ଦି ଓ ବଙ୍ଗଳା ଅକ୍ଷର ସଙ୍ଗେ ଓଡ଼ିଆ ଅକ୍ଷରର ବିଶେଷ ପାର୍ଥକ୍ୟ ନାହିଁ । ତେବେ ଏଠାରେ ଭଲ ଛାପା ହେଉନାହିଁ କାହିଁକି ?

ଏହାର ଅନେକ କାରଣ ଅଛି । ଭଲ ଛାପା ମୁଖ୍ୟତଃ ଛାପାଖାନାର ଦାୟିତ୍ୱ ହେଲେହେଁ, ଲେଖକ, ପ୍ରକାଶକ, ଜନସାଧାରଣ ଓ ସର୍ବୋପରି ସରକାରଙ୍କର ଦାୟିତ୍ୱ ଏ ଦିଗରେ କମ୍ ନୁହେଁ । ନିର୍ଭୁଲ ଓ ନିର୍ଦ୍ଦୋଷ ଛାପାପାଇଁ ଛାପାଖାନାମାନଙ୍କ ଉପରେ ଚାପ ପକାଇଲେ ସେମାନେ ଉନ୍ନତ ମୁଦ୍ରଣ ପାଇଁ ଯତ୍ନ କରନ୍ତେ । କିନ୍ତୁ ଏ ଦିଗରେ କାହାରି ଦୃଷ୍ଟି ଥିଲାପରି ମନେ ହୁଏ ନାହିଁ । ସରକାରଙ୍କ ନିଜ ଛାପାଖାନାରେ ଯାହା ଛପାଯାଏ, ତାହା ଗୁରୁତର ଅବହେଳାର ପରିଚୟ ଦିଏ । ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରୁ ଖୁବ୍ ଅଳ୍ପ ଭଲ ଛାପା ଉପରେ ଜୋର ଦିଅନ୍ତି । ଯେ କୌଣସିମତେ ଛାପାହୋଇ କାମ ଚଳିଲେ ହେଲା । ଅନ୍ୟାନ୍ୟ ବହି ତ ଦୂରର କଥା, ସ୍କୁଲ କଲେଜର ପାଠ୍ୟପୁସ୍ତକ ମଧ୍ୟ ଯାହି ତାହି ଛପା ହୋଇ ହଜାର ହଜାର ସଂଖ୍ୟାରେ ବିକ୍ରି ହୋଇଯାଉଛି । ମୁଦ୍ରଣ ଦୋଷରୁ ପାଠ୍ୟପୁସ୍ତକଗୁଡ଼ିକ ମୁକ୍ତ ହେବା ନିତାନ୍ତ ଦରକାର—ଏ କଥା ନିଶ୍ଚୟ ସମସ୍ତେ ସ୍ୱୀକାର କରିବେ, ମାତ୍ର ଆମ ପାଠ୍ୟପୁସ୍ତକମାନଙ୍କରେ ଅମାର୍ଜନୀୟ ମୁଦ୍ରଣ-ପ୍ରମାଦ ଦେଖିବାକୁ ମିଳେ, ପତ୍ରପତ୍ରିକାକୁ ବା ପଚାରୁଛି କିଏ ? ତା ଛଡ଼ା କେତେକ ସ୍ଥଳରେ ଛାପା ମଧ୍ୟ ଏତେ ନିକୃଷ୍ଟ ଧରଣର ଯେ ସେଗୁଡ଼ିକୁ 'ପଢ଼ାବହି' କହିବାକୁ କୁଣ୍ଠା ବୋଧ ହୁଏ ।

## ମନ ଉପରେ ମୁଦ୍ରଣର ପ୍ରଭାବ—

ମୁଦ୍ରଣ ଗୋଟିଏ ଉତ୍କୃଷ୍ଟ ଆଧୁନିକ କଳା ମଧ୍ୟରେ ପରିଗଣିତ । ସୁନ୍ଦର ରୁଚିକର ଛପା ବହି ମାର୍ଜିତ ରୁଚିର ପରିଚୟ ଦିଏ । ପିଲାଦିନଠାରୁ ଆମ୍ଭେମାନେ ଛାପା ବହି ପଢ଼ିବା ଦିଗରେ ଅଭ୍ୟସ୍ତ । ମୁଦ୍ରିତ ପୁସ୍ତକ ପରୋକ୍ଷ ଭାବରେ ଆମ ମନ ଉପରେ ପ୍ରଭାବ ପକାଉଛି । ଭଲ ଛାପାହୋଇଥିବା ବହିଟିକୁ ପଢ଼ିଲେ

କେବଳ ଯେ ପାଠକର ମନରେ ଆନନ୍ଦ ଜାତହୁଏ ତା ନୁହେଁ, ଅଧିକ ପଢ଼ିବାରେ ତାର ଆଗ୍ରହ ମଧ୍ୟ ବୃଦ୍ଧି ପାଏ । ତା ଛଡ଼ା ବହିକୁ ଯତ୍ନରେ ସାଇତି ରଖିବାକୁ ତାର ଇଚ୍ଛା ହୁଏ । ଅପରିଷ୍କାର ଲୁଗା ପିନ୍ଧିବାକୁ ଦେଇ, ଅସଜ୍ଜସଜ୍ଜିତ ଗୃହରେ ଚଳପ୍ରଚଳ ହେବାକୁ ଦେଇ, ଆମ୍ଭେମାନେ ପିଲାମାନଙ୍କ ମନରେ ପରୋକ୍ଷ ଭାବରେ କୁରୁଚି, ବିଶୃଙ୍ଖଳା ଓ ଅପରିଚ୍ଛନ୍ନତାର ଅଭ୍ୟାସ ସୃଷ୍ଟି କରୁ । ଠିକ୍ ସେହିପରି ସେମାନଙ୍କ ହାତରେ ଅଶୁଦ୍ଧ ଓ ଅସୁନ୍ଦର ଛପା ବହି ଧରାଇ ଦେବାଦ୍ୱାରା ଆମେ ସେମାନଙ୍କ ଜ୍ଞାନ ଓ ରୁଚିକୁ ବିକୃତ କରୁ ନାହିଁକି ?

ଅନ୍ୟ ଦିଗରୁ ଦେଖିଲେ ସୁନ୍ଦର ସୁଦୃଶ୍ୟ ମୁଦ୍ରଣ, ଦେଶର ଉନ୍ନତ ଓ ମାର୍ଜିତ ରୁଚିର ପରିଚାୟକ । ବିଲାତ, ଜର୍ମାନୀ ପ୍ରଭୃତି ଦେଶରୁ ଆସିଥିବା ଔଷଧ ଶିଶି, କାଳି ଓ କଲମ ବା ଯେ କୌଣସି ପଦାର୍ଥର ବାହାର ପ୍ୟାକିଂ ବା ଲେବଲ୍ ଖଣ୍ଡ ଦେଖିଲେ ମଧ୍ୟ ମନ ମୁଗ୍ଧ ହୋଇଯାଏ । ଏତେ ସୁନ୍ଦର ଓ ନିର୍ଦ୍ଦୋଷ ଭାବରେ ସେଗୁଡ଼ିକ ପ୍ରସ୍ତୁତ କରିବାର କଣ କିଛି ଅଭିପ୍ରାୟ ନାହିଁ ? ବ୍ୟବସାୟ ଦୃଷ୍ଟିରୁ ଯାହା ଲାଭ ହେଉ ନା କାହିଁକି, ଏଗୁଡ଼ିକ ଦେଖିଲେ ସେ ସବୁ ଦେଶର ଲୋକମାନଙ୍କ ପ୍ରତି ଆମ୍ଭମାନଙ୍କର ସ୍ୱତଃ ଶ୍ରଦ୍ଧା ଜାତ ହୁଏ । କୌଣସି କାମକୁ ସେମାନେ କଞ୍ଚା ଭାବରେ ବା ଠକାଠକି କରି କରନ୍ତି ନାହିଁ— ଏ ଧାରଣା ଆମ ମନରେ ଦୃଢ଼ୀଭୂତ ହୁଏ । ବିଲାତ ଆମେରିକା ପ୍ରଭୃତି ଦେଶର ଛପାବହି ତ ସୁନ୍ଦର; ଅତି ସାମାନ୍ୟ ବିଜ୍ଞାପନ ଖଣ୍ଡରେ ମଧ୍ୟ ନିଖୁଣ ମୁଦ୍ରଣ ପରିପାଟୀର ଚୂଡ଼ାନ୍ତ ନିଦର୍ଶନ ।

## ସମସ୍ତଙ୍କର ସହଯୋଗ ଲୋଡ଼ା—

ପୂର୍ବରୁ କହିଅଛି ଯେ ଉତ୍ତମ ପରିପାଟୀର ମୁଦ୍ରଣ ପାଇଁ ସମସ୍ତଙ୍କର ଆଗ୍ରହ ଜାତ ନ ହେଲେ ଓ ସେ ଦିଗରେ ସମସ୍ତେ ସଚେଷ୍ଟ ନ ହେଲେ ଛପାର ଉନ୍ନତି ସମ୍ଭବ ହେବ ନାହିଁ । କେହି କେହି କହି ପାରନ୍ତି, ଛପାଖାନା ତ ଭଲ ଭାବରେ ଛାପିବାକୁ ଦାୟୀ । ଏଥିରେ ଅନ୍ୟମାନେ କିପରି ସହଯୋଗ କରିବେ ?

ହଁ, ଛପାଖାନା ମୁଖ୍ୟତଃ ଦାୟୀ ସତ, କିନ୍ତୁ ଦେଶର ଜନସାଧାରଣଙ୍କର ମଧ୍ୟ ଏ ଦିଗରେ କର୍ତ୍ତବ୍ୟ ରହିଛି । ଭଲ ଛପାପାଇଁ ଛପାର ପ୍ରତ୍ୟେକ ଉପକରଣ ଉତ୍କୃଷ୍ଟ ଧରଣର ହେବା ଆବଶ୍ୟକ । କାଗଜ, କାଳି ଓ ମୁଦ୍ରାଯନ୍ତ୍ର ଭଲ ନ ହେଲେ ଭଲ ଛପା ସମ୍ଭବ ନୁହେଁ । ଗୋଟିଏ ଚିତ୍ର ଆର୍ଟ କାଗଜରେ ଯେପରି ଉଠିବ, ସାଧାରଣ ଧଳା କାଗଜରେ ସେପରି ଉଠିବ ନାହିଁ । କାଳିର ମଧ୍ୟ ସେହିପରି ପ୍ରକାର-ଭେଦ ଅଛି । କିନ୍ତୁ ଏ ସବୁ ଥାଇ ସୁଦ୍ଧା ଭଲ ମୁଦ୍ରାକର ନ ହେଲେ ଭଲ ଛପା ସମ୍ଭବ ନୁହେଁ । ଏ ପର୍ଯ୍ୟନ୍ତ ଆମ ଦେଶରେ ତାଲିମପ୍ରାପ୍ତ ମୁଦ୍ରାକର ମିଳି ନାହାନ୍ତି, କାରଣ ଛପାକାମ ଶିଖାଇବାପାଇଁ ଦେଶରେ କୌଣସି ଅନୁଷ୍ଠାନ ନାହିଁ । ଦେଖି ଦେଖି, ନିଜେ ଅଭ୍ୟାସ କରି କରି, ଓଡ଼ିଶାର ଛପାଖାନାର ମେସିନ୍-ମ୍ୟାନ୍‌ମାନେ ଯେତିକି ଜାଣନ୍ତି ସେତିକି । ଛପାଖାନାର ମାଲିକମାନେ ସେଇମାନଙ୍କୁ ନେଇ କାମ କରିବାକୁ ବାଧ୍ୟ । ଜଣେ ଭଲ ଶିକ୍ଷକ ବା ଟାଇପିଷ୍ଟ ଦରକାର ହେଲେ ଆମେ ତାର ସାର୍ଟିଫିକେଟ ଖୋଜୁଛୁ ଏବଂ ଉଚ୍ଚ ଯୋଗ୍ୟତାସମ୍ପନ୍ନ ଲୋକକୁ ନିଯୁକ୍ତ କରୁଛୁ ମାତ୍ର ମୁଦ୍ରଣ କ୍ଷେତ୍ରରେ ଆମେ ନିରୁପାୟ । କୌଣସି ଅନୁଷ୍ଠାନରେ ଶିକ୍ଷାଲାଭ କରି କୃତିତ୍ୱସହ ଉତ୍ତୀର୍ଣ୍ଣ ହୋଇଥିବା ମେସିନ୍‌ମ୍ୟାନ ଓଡ଼ିଶାର କୌଣସି ଛପା-ଖାନାରେ ଅଛନ୍ତି କି ନା ସନ୍ଦେହ ।

ସେଥିପାଇଁ କହେଁ, ସରକାରଙ୍କର ମଧ୍ୟ ଏ ଦିଗରେ ଗୁରୁ ଦାୟିତ୍ୱ ରହିଛି । ନିଖିଳ ଭାରତ ପ୍ରିଣ୍ଟର୍ସ ଫେଡ଼େରେସନର ଉଦ୍ୟମ ଫଳରେ ଭାରତ ସରକାର ଏବେ ଗୋଟିଏ ଉଚ୍ଚ ଧରଣର ପ୍ରିଣ୍ଟିଂ ସ୍କୁଲ ସ୍ଥାପନ କରିବାର କଳ୍ପନା କରୁଛନ୍ତି ସତ, କିନ୍ତୁ ଏତେ ବଡ଼ ଦେଶର ଚାହିଦା ତୁଳନାରେ ଏହା ଯଥେଷ୍ଟ ନୁହେଁ । ପ୍ରତ୍ୟେକ ବଡ଼ ବଡ଼ ପ୍ରଦେଶରେ ଅନ୍ତତଃ ଗୋଟିଏ ଲେଖାଏଁ ସ୍କୁଲ ରହିବା ଆବଶ୍ୟକ

ଓଡ଼ିଶା ସରକାର ଏ ଦିଗରେ ଏ ପର୍ଯ୍ୟନ୍ତ କିଛି କରିନାହାନ୍ତି । ବରଂ ଅନ୍ୟାନ୍ୟ ଛାପାଖାନାରେ କଷ୍ଟେ ମଷ୍ଟେ ଶିକ୍ଷା ପାଇଥିବା କାରିଗରମାନଙ୍କୁ ସରକାରୀ ଛାପାଖାନାର କର୍ତ୍ତାମାନେ ନେଇଯାନ୍ତି । ସେଠାରେ ଭଲ ଛାପାକାମ ହେଉଛି ବୋଲି ନୁହେଁ, ସରକାରୀ ଚାକିରି ମୋହରେ ଏହି କର୍ମଚାରୀମାନେ ସେଠାରେ ଯାଇ ଯୋଗ ଦିଅନ୍ତି ।

ସରକାରଙ୍କୁ ଛାଡ଼ିଦେଲେ ଲେଖକ, ପ୍ରକାଶକ ଓ ଜନ ସାଧାରଣ ମଧ୍ୟ ଏ ଦିଗରେ ଅନେକ ସାହାଯ୍ୟ କରିପାରନ୍ତି । ପ୍ରକାଶକମାନେ ଅଳ୍ପ ଖର୍ଚ୍ଚରେ ବହି ଛପାଇବାକୁ ଚାହିଁବା ସ୍ୱାଭାବିକ, କିନ୍ତୁ ଛାପାର ପରିପାଟୀ ନଷ୍ଟ କରି ପଇସା ବଞ୍ଚାଇବା ବିଜ୍ଞତା ନୁହେଁ । ଏପରି ସ୍ୱାର୍ଥପରତା କ୍ଷମଣୀୟ ନୁହେଁ । କୌଣସି ଛାପାଖାନା ଖୁବ୍ ଶସ୍ତା ରେଟ୍‌ରେ ବହି ଛାପିବାକୁ ରାଜି-ହେବା ଅର୍ଥ ଶୁଦ୍ଧତା ଏବଂ ସୌଷ୍ଠବ ପ୍ରତି ଉପଯୁକ୍ତ ଦୃଷ୍ଟି ନ ଦେଇ ବହି ଛାପିବା । ଏହା ଯେପରି ନିନ୍ଦନୀୟ, ଲେଖକ ବା ପ୍ରକାଶକ ଶସ୍ତା ଲୋଭରେ ଯାହି ତାହି ଢଙ୍ଗରେ ବହି ଛାପାଇ ବଜାରରେ ବିକିବା ମଧ୍ୟ ସେହିପରି ଅଦୂରଦର୍ଶିତା ।

## ଛାପାର ଶୁଦ୍ଧତା

ଅନେକେ ମନେ କରନ୍ତି କେବଳ ପାଠ୍ୟପୁସ୍ତକକୁ ଛାଡ଼ିଦେଲେ ଅନ୍ୟ ସବୁଥିରେ ଛାପା ଭୁଲ ରହିଲେ କିଛି ଯାଏ ଆସେ ନାହିଁ । ଏପରି ଭାବିବା ଠିକ୍ ନୁହେଁ । ନିର୍ଭୁଲ ଛାପା ସବୁ କ୍ଷେତ୍ରରେ କାମ୍ୟ । ଓଡ଼ିଆ ଅକ୍ଷରର ଗଠନ ଓ ଫଳାମାତ୍ରାମାନଙ୍କର ଅବସ୍ଥିତି ଯୋଗୁ ଅବଶ୍ୟ ସମ୍ପୂର୍ଣ୍ଣ ନିର୍ଭୁଲ ଛାପା ସହଜସାଧ୍ୟ ନୁହେଁ । ଯେତେ ସାବଧାନ ହୋଇ ପ୍ରୁଫ୍ ଦେଖିଲେ ସୁଦ୍ଧା ମେସିନରେ ଛାପାକାର୍ଯ୍ୟ ଚାଲିଥିବାବେଳେ ଫଳା-ମାତ୍ରା ଭାଙ୍ଗିଯିବାର ଭୟ ସବୁବେଳେ ରହିଥାଏ । ତଥାପି ସବୁ କଥା ପରି ଭୁଲର ମଧ୍ୟ ଗୋଟିଏ ସୀମା ଅଛି । ଶିକ୍ଷିତ ଓ ଅଭିଜ୍ଞ ଲୋକମାନେ ପ୍ରୁଫ୍ ଦେଖିଲେ ଆମ ବହିମାନଙ୍କରେ ଏତେ ଭୁଲ ରହିବ ନାହିଁ । ସୁତରାଂ ନିର୍ଭୁଲ ଛାପାପାଇଁ ପ୍ରେସ୍ କର୍ତ୍ତୃପକ୍ଷମାନେ ସୁଯୋଗ୍ୟ ପ୍ରୁଫ୍‌ରିଡର ନିଯୁକ୍ତ କରିବା ଆବଶ୍ୟକ ।

ବହି ଛାପିବାପାଇଁ ଅନେକ ସମୟରେ ଯଥେଷ୍ଟ ସମୟ ମିଳେ ନାହିଁ । ତରତରରେ ବହି ଛାପିବା ଫଳରେ ବେଶୀ ଭୁଲ ରହିଯାଏ । ତେଣୁ ନିର୍ଭୁଲ ଛାପା କାମନା କରୁଥିବା ବ୍ୟକ୍ତି ଛାପାଖାନାକୁ ଯଥେଷ୍ଟ ସମୟ ଦେବା ଦରକାର ।

## ପାଣ୍ଡୁଲିପି କିପରି ହେବା ଉଚିତ

ଯେଉଁ ମୂଳ ହାତଲେଖା ଲିପି ଖଣ୍ଡି ଛାପାହେବା ପାଇଁ ଆସେ, ତାକୁ ପାଣ୍ଡୁଲିପି ବା ପ୍ରେସ ଭାଷାରେ କପି (Copy) କହନ୍ତି । ପାଣ୍ଡୁଲିପି ଯେତେ ଶୁଦ୍ଧ ଓ ପରିଷ୍କାର ହୋଇ ପ୍ରସ୍ତୁତ ହେବ, ଛାପାଖାନାର କାର୍ଯ୍ୟ ସେତେ ସହଜ ଓ ସୁଶୃଙ୍ଖଳ ହେବ । ଫଳରେ ପ୍ରେସ ନିର୍ଭୁଲ ଛାପା ଦିଗରେ ତେତେ ଅଧିକ ଦୃଷ୍ଟି ଦେବ । କପି ଖଣ୍ଡି ଠିକ୍ ଭାବରେ ଲେଖା ହୋଇ ନ ଥିଲେ ପ୍ରେସ କର୍ମଚାରୀ ଅଯଥା ହଇରାଣ ହୁଅନ୍ତି । କପି ପଢ଼ିବାରେ ସେମାନଙ୍କର ଏତେ ସମୟ ନଷ୍ଟ ହୁଏ ଯେ ମୁଦ୍ରଣର ସୁଷ୍ଠୁ ସମ୍ପାଦନ ପାଇଁ ଆଉ ସେମାନେ ଅଧିକ ଦୃଷ୍ଟି ଦେଇପାରନ୍ତି ନାହିଁ ।

ପାଣ୍ଡୁଲିପି ଗୁଡ଼ିକ କାଗଜର ଏକପାଖରେ ଲେଖା ହେବା ବିଧି । ଅନେକ ଶିକ୍ଷିତ ବ୍ୟକ୍ତି ମଧ୍ୟ ଏହା ଜାଣନ୍ତି ନାହିଁ । କାଗଜର ଦୁଇପାଖଯାକ ଲେଖାଥିଲେ ଛାପା କାର୍ଯ୍ୟରେ କି ଅସୁବିଧା ହୁଏ, ତାହା ଜାଣିଥିଲେ ସେମାନେ ଦୁଇପାଖ ଲେଖନ୍ତେ ନାହିଁ । ପ୍ରତ୍ୟେକ ଲେଖକ ଛାପାଖାନାରେ ବହି ଖଣ୍ଡେ ଛାପିବାକୁ ଦେଲା ବେଳେ କିପରି ଶୀଘ୍ର ଛାପାକାର୍ଯ୍ୟ ସରିବ, ସେଥିପାଇଁ ଆଗ୍ରହ ଓ ବ୍ୟାକୁଳତା ପ୍ରକାଶ କରିଥାନ୍ତି । ସେମାନେ ଜାଣିବା ଦରକାର ଯେ କାଗଜର ଫାଳେ ଲେଖାଥିଲେ ଚଞ୍ଚଳ ଛାପାକାର୍ଯ୍ୟରେ ସାହାଯ୍ୟ କରେ । ଶୀଘ୍ର ଛାପିବା ଆବଶ୍ୟକ ପଡ଼ିଲେ ପ୍ରେସବାଲାମାନେ ପାଣ୍ଡୁ-ଲିପିର ଗୋଟିଏ ପରବକୁ ଖଣ୍ଡ ଖଣ୍ଡ କରି ଚାରି କମ୍ପୋଜ

କରିବାକୁ ବିଭିନ୍ନ କମ୍ପୋଜିଟର୍‌ମାନଙ୍କୁ ଦେଇପାରନ୍ତି । କିନ୍ତୁ ଦୁଇପାଖ ଲେଖାଥିଲେ ତାହା ସମ୍ଭବ ହୁଏ ନାହିଁ । ଏହିପରି ଖଣ୍ଡେ ଦୁଇପାଖ 'କପି' ଯଦି ମନ୍ଥର-ହସ୍ତ କମ୍ପୋଜିଟରଙ୍କ ହାତରେ ପଡ଼ିଲା, ତେବେ ସେ ତାକୁ ଶେଷ କରିବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଅଟକି ରହେ । ନିର୍ଦ୍ଦିଷ୍ଟ ସମୟରେ ଫର୍ମା ପ୍ରସ୍ତୁତ ହୋଇ ମେସିନ୍‌କୁ ଯାଇପାରେ ନାହିଁ । ଏହି କାରଣରୁ ପ୍ରେସପାଇଁ ଅଭିପ୍ରେତ ପାଣ୍ଡୁଲିପି ଏକପାଖରେ ଲେଖା ହେବା ଏକାନ୍ତ ବାଞ୍ଛନୀୟ ।

## ଓଡ଼ିଆ ଟାଇପ୍ ବା ଅକ୍ଷର

ବର୍ତ୍ତମାନ ଲିପିସଂସ୍କାର ପାଇଁ ଆନ୍ଦୋଳନ ଚାଲିଛି । ନିର୍ଭୁଲ ଓ ସୁନ୍ଦର ଛପାରେ ଏହି ନୂତନ ଲିପିପଦ୍ଧତି କେତେଦୂର ସହାୟକ ହେବ, ତାହା ଆଲୋଚନା କରିବାର ସ୍ଥାନ ଏ ନୁହେଁ । ବର୍ତ୍ତମାନ ଯେଉଁ ଟାଇପ୍ ବା ଅକ୍ଷର ପ୍ରେସ୍‌ମାନଙ୍କରେ ବ୍ୟବହୃତ ହେଉଛି, ସେଇଥିରେ ଯେତେଦୂର ସମ୍ଭବ ନିର୍ଭୁଲ ଓ ପରିଷ୍କାର ମୁଦ୍ରଣ ପାଇଁ ଯତ୍ନ କରିବାକୁ ହେବ । ଟାଇପ ନିର୍ମାତା-ମାନଙ୍କର ମଧ୍ୟ ଏ ଦିଗରେ ଦାୟିତ୍ୱ ଖୁବ୍ ବେଶୀ । ଅକ୍ଷର ଗୁଡ଼ିକ ଯେତେ ସମାନ ହେବ ଓ ଅକ୍ଷରର ମୁହଁ ଯେତେ ଚିକ୍‌କଣ ହେବ, ଛପା ସେତେ ସୁନ୍ଦର ଓ ସମାନ ଦିଶିବ । ଅନଭିଜ୍ଞ କାରିଗରମାନଙ୍କଦ୍ୱାରା ଅଳ୍ପଖର୍ଚ୍ଚରେ ଅକ୍ଷର ତିଆରି କରାଇ କେତେକ ଟାଇପ୍‌ଫାଉଣ୍ଡ୍ରି ପ୍ରେସମାନଙ୍କୁ ଅକ୍ଷର ଯୋଗାଉଛନ୍ତି । ଭଲ ଅକ୍ଷର ମିଳୁ ନ ଥିବାସ୍ଥଳେ ପ୍ରେସ୍ ତାକୁ କିଣିବାକୁ ବାଧ୍ୟ ହୁଏ । ସୁତରାଂ ଶତଚେଷ୍ଟା ଓ ଯତ୍ନ କଲେ ବି ଏପରି ଅକ୍ଷରରୁ କୌଣସି ପ୍ରେସ ଭଲଛପା ଉଠାଇ ପାରିବ ନାହିଁ ।

ଉପରେ ଯେଉଁ ସବୁ ଆଲୋଚନା କରାଗଲା ସେଥିରୁ ଆମ୍ଭେମାନେ ନିମ୍ନଲିଖିତ କେତୋଟି ସିଦ୍ଧାନ୍ତରେ ଉପନୀତ ହେଉଛୁଁ । ଓଡ଼ିଶାରେ ମୁଦ୍ରଣ ପରିପାଟୀର ଉନ୍ନତି ଆବଶ୍ୟକ । ଏ ଦିଗରେ ଛପାଖାନାମାନେ ପ୍ରଥମେ ଦୃଷ୍ଟି ଦିଅନ୍ତୁ । ଯଥାସମ୍ଭବ ନିର୍ଭୁଲ ଓ ନିର୍ଦ୍ଦୋଷ ଛପା ପାଇଁ ସେମାନେ ଚେଷ୍ଟା କରନ୍ତୁ । ଛପାଖର୍ଚ୍ଚ କମାଇ ଗ୍ରାହକଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଯାହିତାହି ଭୁଲଭାଲ କରି ବହି ଛାପି-ଦିଅନ୍ତୁ ନାହିଁ କି ଅନଭିଜ୍ଞ ମେସିନମାନ୍ ଓ ଅଧାପାଠୁଆ ପ୍ରୁଫ୍‌ରିଡରଙ୍କୁ ନେଇ ଅନୁଷ୍ଠାନ ଚଳାନ୍ତୁ ନାହିଁ । ଟାଇପ୍ ନିର୍ମାତାମାନେ ଭଲ ଟାଇପ୍ ତିଆରି କରିବାରେ ଦୃଷ୍ଟି ଦିଅନ୍ତୁ । ଲେଖକ ଓ ପ୍ରକାଶକମାନେ ଉତ୍ତମ ପାଣ୍ଡୁ-ଲିପି ପ୍ରସ୍ତୁତ କରି ଛପାଖାନାକୁ ସାହାଯ୍ୟ କରନ୍ତୁ ଏବଂ ଉଚିତ ମୂଲ୍ୟ ଦେଇ ସୁନ୍ଦର ଓ ପ୍ରମାଦଶୂନ୍ୟ ମୁଦ୍ରଣ ଦାବୀ କରନ୍ତୁ । ପାଠ୍ୟ ପୁସ୍ତକଗୁଡ଼ିକ ଯେପରି ନିର୍ଭୁଲ ଓ ସୁଦୃଶ୍ୟଭାବରେ ମୁଦ୍ରିତ ହୁଏ ସେ ଦିଗରେ ସରକାର ଓ ବିଶ୍ୱବିଦ୍ୟାଳୟ ନଜର ଦିଅନ୍ତୁ । ଓଡ଼ିଶାରେ ମୁଦ୍ରଣ ଶିଳ୍ପର ଉନ୍ନତି ଲାଗି ସରକାର ଗୋଟିଏ ଶିକ୍ଷାନୁଷ୍ଠାନ ଅତି ଶୀଘ୍ର ସ୍ଥାପନ କରିବାରେ ଯତ୍ନବାନ ହୁଅନ୍ତୁ । ଜାତୀୟ ମର୍ଯ୍ୟାଦା ଦୃଷ୍ଟିରୁ ଉପରୋକ୍ତ ପ୍ରସ୍ତାବଗୁଡିକ କାର୍ଯ୍ୟକାରୀ ହେବା ନିତାନ୍ତ ଆବଶ୍ୟକ ।






ଶ୍ରୀ ନବ ପଟ୍ଟନାୟକ

## ୧) ଫ୍ରୁଟ ସଲଟ (Fruit Salt)

ପେଟ ଖରାପ ଥିଲେ, ଝାଡ଼ା ସଫା ନ ହେଉଥିଲେ ଅନେକ ଫ୍ରୁଟ୍ ସଲ୍ଟ ବ୍ୟବହାର କରିବାର ଦେଖାଯାଏ । ବାସ୍ତବିକ ଅଜୀର୍ଣ୍ଣ ରୋଗର ଏହା ଗୋଟିଏ ପ୍ରଧାନ ଔଷଧ । ପାଣି ଗ୍ଲାସକେ ଏଥିରୁ ଚାମଚେ ବା ଦୁ ଚାମଚ ପକାଇ ଦେବା ମାତ୍ରେ ପାଣି ଫୁଟି ଉଠେ ଓ ବାଷ୍ପ ବାହାରି ପଡ଼େ, କିନ୍ତୁ ପାଣି ଗରମ ନ ହୋଇ ବରଂ ବେଶୀ ଥଣ୍ଡା ହୋଇଯାଏ । ଭୋଜି ଭାତ ଖାଇ ପେଟ ଅସୁଖ ବୋଧ ହେଲେ ଏହା ବଡ଼ କାମ ଦିଏ । ଘରେ ବସି ତିଆରି କର, ଦରକାର ବେଳେ କାମରେ ଆସିବ ।

ପ୍ରଣାଳୀ—

(କ) ଭଲ ସୋଡ଼ା ବାଇକାର୍ବ (Sodium bicarbonate)— ୧୮
ଟାର୍ଟାରିକ ଏସିଡ଼ (acid tartaric)— ୧୦
ସାଇଟ୍ରିକ ଏସିଡ଼ (acid citric)— ୪
ମ୍ୟାଗ୍ ସଲ୍ଫ (magnesium sulphate)— ୧୬

(ଖ) ସୋଡ଼ାବାଇକାର୍ବ (sodium bicarbonate)— ୪୧
ଟାର୍ଟାରିକ ଏସିଡ଼ (acid tartaric)— ୨୨
ସାଇଟ୍ରିକ ଏସିଡ଼ (acid citric)— ୧୮

(ଗ) ସୋଡ଼ାବାଇକାର୍ବ (sodium bicarbonate)— ୧
ଟାର୍ଟାରିକ ଏସିଡ଼ (acid tartaric) — ୧
କ୍ରିମ୍ ଅଫ ଟାର୍ଟାର (cream of tartar)— ୧
ଏପ୍‌ସମ୍ ସଲ୍ଟ (Epsom Salt)— ୧
ଚିନି (Sugar)— ୧

ପ୍ରତ୍ୟେକ ଜିନିଷକୁ ମାଟି ବାସନରେ ଏକାଠି କରି ଚୁଲିରେ ବସାଇ ଭାଜ । ଜାଳ ଅଳ୍ପ ଅଳ୍ପ ଦିଅ । ଜିନିଷଯାକ ତରଳି ଗଲେ ଓହ୍ଲାଇ ଦିଅ । ଗୁଣ୍ଡ କରି ବୋତଲରେ ରଖି ଭଲ ଠିପି ଦେଇ ରଖ । ଠିପି କୋହଳ ହେଲେ ନଷ୍ଟ ହୋଇଯିବାର ସମ୍ଭାବନା ।

ମାତ୍ରା—ଏକ ବା ଦୁଇ ଚାମଚ (tea spoon)

## ୨) ଶିର୍କା ବା ଭିନାଗାର (Venegar)

ଧଳାର ବିପରୀତ କଳା ପରି ମିଠାର ବିପରୀତ ଶିର୍କା । ଯିରପ ମିଠା ଓ ଶିର୍କା ଖଟା । ଶିର୍କାର ବ୍ୟବହାର ଅନେକ ପ୍ରକାର । ପ୍ରଧାନତଃ ଏହା ଖଟା ବା ଚଟଣୀ ତିଆରିରେ ଲାଗେ । ସଭ୍ୟଯୁଗର ଅନେକ ତିଅଣ ତରକାରିରେ ମଧ ଭିନାଗାର ବ୍ୟବହୃତ ହୁଏ ।

ଏପରି ତିଆରି ହୁଏ—

ଝୁରିଗୁଡ— ୪
ଇଷ୍ଟ (yeast)— ୧
ବରଷା ପାଣି (rain water)— ୨୪

ଗୋଟିଏ ମାଠିଆରେ ଉପରୋକ୍ତ ଜିନିଷଯାକ ଗୋଳାଇ ରଖ । ମାଠିଆ ମୁହଁକୁ ଭଲଭାବେ ବନ୍ଦ କରି ମାଟିରେ ପୋତିଦିଅ । ଅଳ୍ପ ଦିନରେ ସବୁ ସଡ଼ି ପଚିଯିବ । ପଚେଇବା ସକାଶେ (for formentation) ଇଷ୍ଟ (yeast) ର ପ୍ରୟୋଜନ ହୁଏ । ବିସ୍କୁଟ ଏବଂ ପାଉଁରୋଟି (loaf) ତିଆରିରେ ଏଇ ଇଷ୍ଟ ଦରକାର ପଡ଼େ । କେତେ ମାସପରେ ମାଠିଆ ଖୋଲି ଫେଣ କାଢ଼ି ପକାଅ ଏବଂ ଭିନାଗାର ଛାଣି ବାହାର କର ।

### ୩) ମାଛି ମରା କାଗଜ (Fly paper)

ଖରାଦିନେ ବେଶୀ ମାଛି ହୁଅନ୍ତି । ମାଛି ବ ସବୁ ରୋଗର ମୂଳ । ନିମ୍ନଲିଖିତ ଉପାୟରେ ଘରର ମାଛି ସବୁ ନଷ୍ଟ କରିବାକୁ ଚେଷ୍ଟା କରନ୍ତୁ ।

(କ) ରନ୍ଧା ପେଶୁ ତେଲ (Boiled linseed oil) - ୩
(ରଙ୍ଗ ଦୋକାନରେ ଗର୍ଜନ ତେଲ ନାମରେ ପରିଚିତ)
ଗମଥସ୍ (Gumthus)— ୧
ଜଡ଼ା ତେଲ (Castor oil)— ୧
(ଗମ୍‌ଥସ୍ ନ ମିଳଲେ ଭେନିସ ଟରପେନ୍‌ଟାଇନ ବା କାନାଡ଼ା ବାଲସାମ୍ Canada Balsam ବ୍ୟବହୃତ ହୋଇ ପାରେ )

ସବୁ ଜିନିସ ଯାକ ଏକାଠି କରି ରାନ୍ଧି ଦିଅ । ଭଲ-ଭାବେ ମିଶିଗଲେ ଗରମ ଥାଉ ଥାଉ କାଗଜ ଉପରେ ବୋଳି ରଖ । ଯେଉଁ ଜାଗାରେ ବେଶୀ ମାଛି ଥିବେ ସେଇଠି ସେ କାଗଜ ରଖିଲେ ମାଛି ଯାକ ଏହାର ଗନ୍ଧରେ ଟାଣି ହୋଇ ଆସିବେ ଓ କାଗଜରେ ବସିଲେ ଆଉ ଉଡ଼ି ଯାଇ ପାରିବେ ନାହିଁ ।

(ଖ) ହରିତାଳ (Orpiment-poison)— ୧
ଚିନି— ୧୨

ଏକାଠି ଗୁଣ୍ଡ କରି ଅଳ୍ପ ପାଣିରେ ଗୋଳାଇ କାଗଜରେ ବୋଳି ପରୀକ୍ଷା କରାଯାଇ ପାରେ । ହରିତାଳ ବିଷ ତେଣୁ କୁକୁର ବିଲେଇଙ୍କୁ ସାବଧାନ କରିବେ ।

### ୪)ମୂଷା ମାରିବା ଉପାୟ (Mouse killing —poison)

ବ୍ୟାରିଅମ କାର୍ବୋନେଟ (Barium Carbonate) ୧
ମଇଦା ବା ଯେ କୌଣସି ଖାଦ୍ୟ ୪

ବ୍ୟାରିଅମର ସ୍ୱାଦଗନ୍ଧ କିଛି ନାହିଁ । ଏହାକୁ ମୂଷା ଭଲରେ ଖାଇ ଯାଆନ୍ତି । ବ୍ୟାରିଅମ ଦେହର ଜଳୀୟ ଅଂଶ ଟାଣିନିଏ ତେଣୁ ସେମାନଙ୍କୁ ଭାରିଶୋଷ ହୁଏ । ମୂଷା-ଯାକ ପାଣି ଖୋଜି ଯାଆନ୍ତି । ପାଣି ଯେତିକି ପିଅନ୍ତି ଶୋଷ ସେତିକି ବେଶୀ ହୁଏ । ପାଣି ପିଇ ପିଇ ପେଟ ଫାଟି ମରି ଯାଆନ୍ତି ।

### ୫)ମଶା ନିବାରଣ (Mosquito preventive)

| | | |
|---|---|---|
| କାର୍ବୋଲିକ ଏସିଡ଼ (Acid carbolic) | ୪ ଗ୍ରେନ୍ | |
| କେରୋସିନ୍ (kerosin oil) | ୨ ଫ୍ଲୁଇଡ଼ ଡ୍ରାମ | |
| ଲେମ୍ବୁତେଲ (Oil citronella) | ୨ ,, | ,, |
| ନଡ଼ିଆତେଲ (Cocoanut oil) | ୪ ,, | ,, |

ମଶାର ଅଭାବରେ ଉପରୋକ୍ତ ଜିନିଷ ସବୁ ଏକାଠି କରି ଦେହରେ ବୋଳି ଶୋଇଲେ ମଶା କାମୁଡ଼ନ୍ତି ନାହିଁ ।

### ୬)ପିମ୍ପୁଡ଼ି ଓ ଉଇମରା ଔଷଧ (Ant poison)

ଗନ୍ଧକର୍ପୂର (Naphthalane) ୧
କେରୋସିନ୍ (Kerosine) ୨
କ୍ରିଓଜୋଟ (Creosote) ୩
ସ୍ପିରିଟ (Methylated spirit) ୮
ପାଣି ୧୬୦

ପ୍ରଥମ ତିନୋଟି ଜିନିସକୁ ଗୋଟିଏ ପାତ୍ରରେ ରଖି ପାଣିଉପରେ (water bath) ଗରମ କର । ସମସ୍ତ ମିଶିଗଲେ ଓହ୍ଲାଇ ନେଇ ଥଣ୍ଡା ହୋଇଗଲେ ସ୍ପିରିଟ ମିଶାଇ ରଖ । ଦରକାର ସମୟରେ ପାଣି ମିଶାଇ ବ୍ୟବହାର କର

ଖରା ଦିନରେ ପିମ୍ପୁଡ଼ି ବହୁତ ଦେଖାଦିଅନ୍ତି । ଘରର ଗୃହଅଡ଼େ ବୁଲି ଶୋଇ ବସେଇ ଦିଅନ୍ତି ନାହିଁ । ପ୍ରତ୍ୟହ ଥରେ ବା ଦୁଇଥର ଏଇ ଲୋସନରୁ କିଛି ଘରେ ଛିଞ୍ଚି ଦେଲେ ପିମ୍ପୁଡ଼ି ଆଉ ହୁଅନ୍ତି ନାହିଁ ।

—o—

## ଏଜେଣ୍ଟ ଓ ଗ୍ରାହକ ମାନଙ୍କ ପ୍ରତି

ଗ୍ରୀଷ୍ମଛୁଟୀ ଆସୁଛି । ଅନେକ ଗ୍ରାହକ ଗ୍ରାହିକା ସ୍କୁଲଠିକଣାରେ ପତ୍ରିକା ମଗାନ୍ତି । ଛୁଟୀରେ ସ୍କୁଲ ବନ୍ଦ ଥିଲେ ମଧ୍ୟ ପୂର୍ବପରି ନିର୍ଦ୍ଦିଷ୍ଟ ତାରିଖରେ ପତ୍ରିକା ପଠାଇ ଦିଆଯିବ । ଛାତ୍ର ଛାତ୍ରୀ ମାନେ ଛୁଟୀରେ ସେମାନଙ୍କ ପତ୍ରିକା ସ୍କୁଲ ଠିକଣାରୁ ନେବାର ବନ୍ଦୋବସ୍ତ କରିବେ । ଇଂରାଜି ମାସ ୩ ତାରିଖରେ 'ସଂସାର' କଟକରୁ ପଠାଯାଏ ।

ଏଜେଣ୍ଟମାନେ ମେ ମାସ ୨୦ ତାରିଖ ମଧ୍ୟରେ ଆମକୁ କିଛି ନ ଜଣାଇଲେ ସେମାନଙ୍କ ପତ୍ରିକା ପୂର୍ବପରି ପଠାଯିବ । ଗ୍ରୀଷ୍ମଛୁଟୀ ଯୋଗୁ ସେମାନଙ୍କର ଯଦି ଅଳ୍ପସଂଖ୍ୟକ ପତ୍ରିକା ଆବଶ୍ୟକ ହୁଏ, ତେବେ ୨୦ ତାରିଖ ପୂର୍ବରୁ ଆମକୁ ଜଣାଇବା ଆବଶ୍ୟକ । ନ ହେଲେ ଅଧିକଗୁଡ଼ିଏ ପତ୍ରିକା ଛାପି ଆମେ ଅଯଥା ଖର୍ଚ୍ଚାନ୍ତ ହେବୁ ।

—o—

# ଶଙ୍ଖ କୋଇଲି (ଗଳ୍ପ)

ଶ୍ରୀ ମୋହନ ମୁରାରି ବାରିକ

(ଯେଉଁଠି ରହିଥିଲି ସେଇଠୁ)

ରୁମୁ ଝୁମୁ···! ରୁମୁଝୁମୁ···! ସରଗରେ ଚାଲିଚି ନାଚ । ଗନ୍ଧର୍ବ କିନ୍ନରମାନେ ବଜାଉଛନ୍ତି ନାନା ରକମର ବାଜା । ରମ୍ଭା, ମେନକା ଆଦି ଅପସରୀମାନେ ଥାଦନ୍ତାକ ନାଚୁଛନ୍ତି ବାଦ୍ୟର ତାଳେ ତାଳେ । ନୂପୁରର ଛନ୍ଦେ ଛନ୍ଦେ ଉଠୁଚି···ସଙ୍ଗୀତର ଥରଣିଆ ଲହରି । ସୋମରସ ପିଇ ଦେବତାମାନେ ଆନନ୍ଦ ବିଭୋର !

ହଠାତ୍ ନାଚ ଗୀତ ବନ୍ଦ ହୋଇଗଲା । ଦୂରରୁ ଶୁଭିଲା ଗୋଳମାଳ । ଆକାଶ କମ୍ପୁଚି ଦଲଦଲ । କ୍ରମେ ସେ ଶବଦ ପାଖେଇ ଆସିଲା । ଦେବତା ମାନଙ୍କ ନିଶା ଛୁଟିଗଲା ।

କିଏ ଆସୁଚି ? ଅସୁର ମାନେ ? କ'ଣ ଅମର ପୁରୀକୁ ଘେରାଉ କରିବେ ? ଦେବତାମାନେ ନିଜ ନିଜର ହାତ ହତିଆର ଖୋଜିଲେ ।

ଖୁବ୍ ଅଳ୍ପ ସମୟ ପରେ ଦେଖାଗଲା ପୃଥିବୀର ଛପନ କୋଟି ଜୀବଜନ୍ତୁ ଲମ୍ବି ଆସୁଛନ୍ତି ! ପୁଣି ଜାଣିଲେଣି; ମରଲୋକର ଜୀବମାନେ ସରଗକୁ ଆସିଲେ ! ତେବେ ସରଗର ମାନ ରହିଲା କୋଉଠି ?

ସେମାନେ ସରଗ ଦୁଆର ନ ଛୁଉଁଣୁ ଦେବତାମାନେ ଆଗେଇ ଆସିଲେ । ବ୍ରହ୍ମା ସମସ୍ତଙ୍କ ଆଗରେ । ଏଇ ବ୍ରହ୍ମାଙ୍କ ଯୋଗୁଁ ଏ ସୃଷ୍ଟି ସିନା ! ଚାରି ମୁହଁରେ ସେ ଗାଉଛନ୍ତି ବେଦର ମନ୍ତ୍ର !

ଏମାନଙ୍କୁ ଦେଖି ପୃଥିବୀର ଜୀବଜନ୍ତୁ ସବୁ ମାନ୍ୟ କଲେ । ବ୍ରହ୍ମା ଏମାନଙ୍କ କୁଶଳ ପଚାରିଲେ । ଜୀବଜନ୍ତୁ ମାନେ ସେଇଠୁ ପୃଥିବୀର ଘଟଣା ଗୋଟି ଗୋଟିକରି କହି ବସିଲେ—

ଶଂଖ-ସାଥିରେ ଶିଳାଧର କରେ ରଣ,
ଜଳରେ ବୁଡ଼ିଲା ଦୁନିଆଁ ର ଯେତେ ଥାନ;
ଅକାଳରେ ଆଜି ପ୍ରଳୟ ଛୁଟିଇ ଡ଼କା,
ଉଦ୍ଧରି ଏବେ ସୃଷ୍ଟିକରତା ଏକା !

କହି କହି ସମସ୍ତେ ମଂଚଭୁବନ ଆଡ଼କୁ ଅଙ୍ଗୁଳି ବଢ଼ାଇ ଦେଲେ । ଦେବତାମାନେ ସେ ଆଡ଼କୁ ଚାହିଁଲେ । ସେମାନଙ୍କ ଆଶ୍ଚର୍ଯ୍ୟ କୂଳ କିନାରା ମାନିଲାନି ।

ଏହା ଦେଖି ବ୍ରହ୍ମା କହିଲେ-"ତମେମାନେ କେହି ଚିନ୍ତିତ ହୁଅନି ! ଖୁବ୍ ଶୀଘ୍ର ସବୁ ଠିକ୍ ହେଇଯିବ ! ତେବେ ଏ ଏକ ବିରାଟ ରହସ୍ୟ !"

"ରହସ୍ୟ ? କିପରି ?" ଦେବତା ଓ ମର ଲୋକର ଅଧିବାସୀ ମାନେ ପଚାରି ଉଠିଲେ !

—"ହଁ, ଏକ ମହାନ୍ ରହସ୍ୟ ଏ ! ମନେ ଥିବ ···ସେ ଯୁଗର କଥା ! ସଗର ବଂଶ ଧ୍ୱଂସ ହେଉଥିଲେ—ବ୍ରହ୍ମ ଋଷିର ଅଭିଶାପରେ । ସେ ବଂଶରେ ଜନ୍ମ ନେଲେ ଭଗୀରଥ । ସେ ଡାକି ଆଣିଲେ ଗଙ୍ଗାକୁ । କିନ୍ତୁ ଗଙ୍ଗାଙ୍କ ବାଟ ଖୋଳି ଦେଇଥିଲା ଐରାବତ ! ଗଜ-ଶ୍ରେଷ୍ଠ ଐରାବତ ଏଥିପାଇଁ ଗର୍ବ ବହିଥିଲା । ଫଳରେ ତା' ଗର୍ବକୁ ଚୂନା କରିବା ପାଇଁ ଗଙ୍ଗା ତାକୁ ଜୋର୍‌ରେ ଠେଲି ନେଇଥିଲେ !"

"ସେ କଥାସହ ଏହାର କ'ଣ ସମ୍ପର୍କ ଅଛି···?"

"ଅଛି ବୋଲି ଯେ କହୁଚି ! ଶୁଣ···! ସେଇ ଅପମାନର ପ୍ରତିଶୋଧ ପାଇଁ ଐରାବତ ଯାଇ ଶିବଙ୍କୁ ପ୍ରାର୍ଥନା କଲା । ଯୁଗର ଶେଷ ହେଲା । ମହାଦେବ ତା' ତପସ୍ୟାରେ ସନ୍ତୋଷ ହୋଇ ଗଲେ । ସେ ତାଙ୍କଠୁ ବର ମାଗି ଆଣିଲା—ଗଙ୍ଗାଙ୍କ ଗତିପଥ ଦିନେ ସେ ରୋଧିନେବ !"

"ତେବେ ଶିଳାଧର କ'ଣ ଐରାବତ······? ଆଉ···!"

"ଆଉ······ଶଙ୍ଖ ହେଉଛନ୍ତି ନିଜେ ଗଙ୍ଗା । ଅଭିଶାପ ପାଇ ଶଙ୍ଖ କୋଇଲି ଚଷାଘରେ ଜନମ ନେଇଥିଲେ । ଦ୍ୱାପର ଯୁଗ ଆସିଲେ ଦୁନିଆଁ ରେ ଯେଉଁ ପରିବର୍ତ୍ତନ ହେବ ସେଥିଲାଗି ଏତେବେଳୁ ଏସବୁ ଘଟି ଯାଉଚି । ଭଗବାନ୍ ଶ୍ରୀକୃଷ୍ଣ ସେ ଯୁଗରେ

ଆସିବେ । ଯମୁନାର କୂଳରେ ସେ ଖେଳାଲୀଳା କରିବେ ! କିନ୍ତୁ ତାଙ୍କର ଏଇ ଖେଳା ଲୀଳା, ହସଖୁସି କଥା ଲେଖି ରଖିବେ ଆଉ ଜଣେ···! ସେ ହେଉଛନ୍ତି ବେଦବ୍ୟାସ । ସେ କୃଷ୍ଣଙ୍କ କଥା ଲେଖି ରଖିବା ଯୋଗୁଁ ହେବେ-କୃଷ୍ଣ ଦ୍ୱୈପାୟନ । ଶଙ୍ଖ ହେଲେ ଶୁଭ୍ର ଗଙ୍ଗା, କୋଇଲି ହେଲେ ନୀଳ ଯମୁନା । ସେମାନେ ମିଳିବେ ପରାଶରଙ୍କ ଆଶ୍ରମ ପାଖେ । ସେଇଠି ଏକ ନୂଆ ତୀର୍ଥ ହେଇଁ ଉଠିବ । ମୁନି ଋଷି-ମାନେ ଆଶ୍ରମ ତିଆରି କରିବେ । ଯାଗ ହେବ । ବେଦ ମନ୍ତ୍ରରେ ଆକାଶ ପୃଥିବୀ ଭରିଯିବ । ଯଜ୍ଞ ଧୂଆଁରେ ମେଘ ତିଆରି ହୋଇଯିବ !”

“ତାପରେ··· ?” ଦେବତାମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

“ପରାଶର ଦିନେ ନାଆ ପାରି ହେବେ । ଏଇ ନଦୀର ପାଖରେ ଦାସ ରଜାର ରାଜ୍ୟ । ତା’ର ଝିଅର ନାଁ ମତ୍ସ୍ୟଗନ୍ଧା । ମାଛର ଆଇଁଷିଆ ଗନ୍ଧ ତା’ ଦେହରୁ ସବୁବେଳେ ବାହାରୁ ଥାଏ । ଋଷି ଏଇ ଝିଅଟିକୁ ଭଲ ପାଇ ବସିବେ । ତେଣୁ ତା’ ନାଁ ହେବ ଯୋଜନ-ଗନ୍ଧା, ସେ ହେବ ଅପୂର୍ବ ସୁନ୍ଦରୀ; ଜନ୍ମହେବେ ବେଦ-ବ୍ୟାସ । ଏଇ ବେଦବ୍ୟାସ ପିଲିଟି ଦିନରୁ ସାଧିବେ ଯୋଗ ତପ ଆଦି । ତା’ପରେ ସେ ସରସ୍ୱତୀ-କୁଣ୍ଡରେ ଗାଧୋଇବେ । ସେଇ ମୁହୂର୍ତ୍ତରେ ଦେବୀ ସରସ୍ୱତୀ ତାଙ୍କ ପ୍ରତି ପ୍ରସନ୍ନା ହେବେ । ସରସ୍ୱତୀଙ୍କ ବରରେ ବ୍ୟାସ ହେବେ ମହାକବି । ସେତେବେଳେ ଚନ୍ଦ୍ରବଂଶର ରାଜୁତି । କୌରବ ପାଣ୍ଡବମାନେ ନିଜ ନିଜ ଭିତରେ ଲଢ଼େଇ କରିବେ । ତାହା ହେବ ମହାଭାରତ ଯୁଦ୍ଧ । ଆଉ ବ୍ୟାସ ଲେଖିବେ ମହାଭାରତ କାବ୍ୟ ! ଶ୍ରୀକୃଷ୍ଣ ଦେବେ ଅର୍ଜୁନଙ୍କୁ ଉପଦେଶ । ସେ ହେବ ଗୀତା !”

“ଏତେ କଥା ତେବେ ଯୁଗ’ ଭିତରେ ? ଆଚ୍ଛା, କହିଲେ ନି’ ତ ସରସ୍ୱତୀ କାହିଁ ?”

“ସରସ୍ୱତୀ ହେଉଛନ୍ତି—ନିଜେ ସର ! ଏ ତିନି-ଭଉଣୀ ଯେଉଁଠି ମିଳିବେ—ସାରା ସଂସାରରେ ତାହା ହେବ ଏକ ଶ୍ରେଷ୍ଠ ତୀର୍ଥଭୂମି ! ହଁ, ଲଢ଼େଇଟିର ଗଙ୍ଗା ବା ଶଙ୍ଖ ପରିହିଲେ ହାରିବେ । ଝିଗିବତ ସେଇପରି ବର ପାଇଛି । ବର୍ତ୍ତମାନ ହାରିବାର ବେଳ । ତେବେ, ଏ ବିଷୟରେ ତୁମେମାନେ ଗରୁଡ଼ଙ୍କ ଉପଦେଶ ନିଅ । ସେ ଅଛନ୍ତି ରମ୍ୟକ ଦ୍ୱୀପରେ !” କହି ବ୍ରହ୍ମା ମନ୍ତ୍ର ଉଚ୍ଚାରଣ କରୁ କରୁ ଅନ୍ତର୍ହିତ ହୋଇଗଲେ ।

ପୃଥିବୀର ଜୀବଜନ୍ତୁମାନେ ରମ୍ୟକ ଦ୍ୱୀପ ଆଡ଼କୁ ଚାଲିଲେ । ସେଠାରେ ପହଞ୍ଚିଲା ବେଳକୁ ଗରୁଡ଼ ତପସ୍ୟାରେ ବସିଥିଲେ । ସେ କିଛି ସମୟ ପରେ ଧ୍ୟାନରୁ ଉଠିଲେ । ହାଲ ଚାଲ ସବୁ ପଚାରିଲେ । ଜୀବଜନ୍ତୁମାନେ ସବୁ ହାଲ ହକିକତ ବତାଇଲେ ।

ଗୋଟି ଗୋଟି ସବୁ କଥା ଶୁଣିଲେ ଗରୁଡ଼ । ତା’ ପରେ ସହାନୁଭୂତିର ସହିତ କହିଲେ— ଆକାଶର ତଳେ ମଞ୍ଚ ଦେଶରେ ଗୋଟିଏ ଦେଶ ଅଛି । ସେ ରାଜ୍ୟର ଦକ୍ଷିଣରେ ଶବୋପୂଲା । ଉତ୍ତରରେ ‘ସୁରେଶ୍ୱରୀ’ ପର୍ବତ । ଏ ଦେଶ ବଡ଼ ପବିତ୍ର ଦେଶ । ଏହାର ନାମ ‘ମଲ୍ଲ-ପୁର’ ! ଏହାର ‘ଦେଉଳ-ଝରୀ’ ରେ ନିଜେ ମହାଦେବ ରହିଛନ୍ତି । ହଁ, ଯେଉଁ ‘ସୁରେଶ୍ୱରୀ’ ପର୍ବତ କହିଲି ସେଠାରେ ‘ଦେବୀ ସୁରେଶ୍ୱରୀ’ ଅଛନ୍ତି । ପର୍ବତକୁ କେହି କେହି ‘ଶୁଆ-ସାରି’ ବୋଲି କହନ୍ତି । କହିବାର କି କାରଣ ଅଛି । କାରଣ ଏ ପର୍ବତର ପଶ୍ଚିମରେ ରହେ ଶୁଆ । ପୂର୍ବରେ ରହେ ସାରି । ଶୁଆ ହେଉଛି—ମୋର ମାନସ-ପୁତ୍ର । ତାର ନାମ ‘ବଜ୍ର-ଚଂଚୁ-ଶୁକ’ ! ଆଉ ସାରୀ ହେଉଛି ସରସ୍ୱତୀଙ୍କ ମାନସ-ପୁତ୍ର । ତା’ ନାଁ ହେଉଛି, “ବାଣୀ-କଣ୍ଠ-ସାରୀ” ! ଏ ଦି’ଜଣଙ୍କୁ ଆଣିବାକୁ ହେବ !”

“ସେମାନଙ୍କୁ **ଆଣିବାର କି** ଉପାୟ ଅଛି ?” ଜୀବଜନ୍ତୁ ପ୍ରଶ୍ନ **କଲେ ।**

“ଉପାୟ ନିଶ୍ଚୟ ଅଛି । ହେଲେ ବହୁତ କଷ୍ଟକର । ଏ ଦିହେଁ ତ ବିପଶ୍ଚିତ ପାଖରେ ରହନ୍ତି । ଯେଉଁଠି ରହନ୍ତି, ତାର ଚାରିପାଖେ ସାତପ୍ରସ୍ଥ ଆକାଶଛୁଆଁ

( ୨୨ ପୃଷ୍ଠା ଦେଖନ୍ତୁ )

# ମିସ୍ ହେଲେନ୍ କେଲର୍

ଶ୍ରୀ ବାସୁଦେବ ତ୍ରିପାଠୀ, ବି.ଏ., ଡି.ଇଡ.

ଆମେରିକାର ପୃଥିବୀବିଖ୍ୟାତ ଅନ୍ଧ ଓ ବଧିର ଅଧ୍ୟାପିକା ମିସ୍ ହେଲେନ୍ କେଲର୍ ଗତ ଫେବୃୟାରୀ ମାସ ୨୦ ତାରିଖଠାରୁ ଭାରତକୁ ଭ୍ରମଣ ଉଦ୍ଦେଶ୍ୟରେ ଆସିଥିଲେ । ସେ ଭାରତରେ ୨ ମାସ ରହି ବିଭିନ୍ନ ସ୍ଥାନ ଦେଖିଥିଲେ । ଏହି ଅଧ୍ୟାପିକାଙ୍କ ଜୀବନ ବୃତ୍ତାନ୍ତ ଯେପରି କରୁଣ ସେହିପରି ଚିତ୍ତାକର୍ଷକ । ସେ ୧୮୮୦ ଖ୍ରୀଷ୍ଟାବ୍ଦ ଜୁନମାସ ୨୦ ତାରିଖରେ ଯୁକ୍ତରାଷ୍ଟ୍ର ଆମେରିକା ଅନ୍ତର୍ଗତ ଆଲବାମାର ଏକ କ୍ଷୁଦ୍ର ସହର ମଧ୍ୟରେ ଜନ୍ମଗ୍ରହଣ କରିଥିଲେ । ତାଙ୍କୁ ଯେତେବେଳେ ମୋଟେ ଦୁଇବର୍ଷ ହୁଏ, ଠିକ୍ ସେତିକିବେଳେ ସେ ଏକ ମାରାତ୍ମକ ରୋଗରେ ପୀଡ଼ିତା ହେଲେ ଏବଂ ଚିରଦିନ ପାଇଁ ତାଙ୍କୁ କିଛି ଦିଶିଲା ନାହିଁ କି ଶୁଭିଲା ନାହିଁ । ସେ ଦର୍ଶନ ଓ ଶ୍ରବଣରୁ ବଞ୍ଚିତା ହୋଇଥିଲେ ମଧ୍ୟ ସାଧାରଣ ନାରୀଙ୍କ ପରି ସ୍ୱଜୀବନକୁ ହେୟ ମନେ କରୁ ନ ଥିଲେ । ଉଚ୍ଚ ଆକାଙ୍କ୍ଷା ତାଙ୍କ ପ୍ରାଣର ପ୍ରତି ଛନ୍ଦେ ଛନ୍ଦେ ଦେଖାଯାଉଥିଲା । ସେ ଏକ ସମୟରେ ଛନା, କାଲ ଓ ଅନ୍ଧ ଥିଲେ । ତାଙ୍କ ପରି ଝିଅ ଆମ ଦେଶରେ ଅବଶ୍ୟ କେତେଜଣ ଥିବେ ; କିନ୍ତୁ କିଏ ତାଙ୍କପରି ବିପୁଳ ଖ୍ୟାତି ଅର୍ଜ୍ଜନ କରିଛି ? ତାଙ୍କୁ ପାଇ କେଲର୍ ପରିବାର ଦୁଃଖିତ ହୋଇ ନ ଥିଲେ । ତାଙ୍କ ମାଆ ଝିଅର ଲାଳନ ପାଳନ ଦିଗରେ କେବେହେଲେ ତ୍ରୁଟି କରୁ ନ ଥିଲେ । ରୋଗରୁ ମୁକ୍ତ ହେବାପରେ ହେଲେନ୍ ନାନାଦି ଦୁଃଖ ମଧ୍ୟ ଦେଇ ଗତି କରିଥିଲେ । ସେ ବାକ୍‌ଶକ୍ତି-ହୀନା ହୋଇ ସଙ୍କେତ ଦ୍ୱାରା ମନର ଭାବ ବ୍ୟକ୍ତ କରୁଥିଲେ ଏବଂ ସଙ୍କେତ ଦ୍ୱାରାହିଁ ଯାହା କିଛି ବୁଝୁଥିଲେ । ମା ମୁଣ୍ଡ ହଲାଇଲେ ସେ 'ନାହିଁ' ବୋଲି ବୁଝୁଥିଲେ । କେହି ତାଙ୍କ ହାତକୁ ଟାଣିଲେ କିମ୍ବା ଠେଲିଲେ ସେ 'ଆସ'—'ଯାଅ' ବୁଝୁଥିଲେ । ଥରେ ଜଣେ ବନ୍ଧୁ ତାଙ୍କ ଘରକୁ ଆସୁଥିବାର ସେ ଅନୁମାନ କରି ( ମାଙ୍କ ପୋଷାକ ପିନ୍ଧିବାକୁ ଛୁଇଁ ) ସାଙ୍ଗେ ସାଙ୍ଗେ ସିଡ଼ି ଉପରକୁ ଉଠି ଉପରମହଲାକୁ ଗଲେ ଏବଂ ତେଲ ଆଣି ମୁଣ୍ଡରେ ତାଳି ମୁଣ୍ଡ କୁଣ୍ଡାଇଲେ । ତତ୍ପରେ ପାଉଡ଼ର ମୁହଁରେ ମାଖି ଖଣ୍ଡିଏ ସୁନ୍ଦର ପୋଷାକ ପିନ୍ଧି ପକାଇଲେ ଏବଂ ବନ୍ଧୁଙ୍କ ସହିତ ସାକ୍ଷାତ୍ କଲେ । ମାଆ କଣ କହୁଛନ୍ତି, ସେ ତାଙ୍କ ପାଟିରେ ହାତମାରି ବୁଝିବାକୁ ଚେଷ୍ଟା କରନ୍ତି । ସମୟେ ସମୟେ ସେ ବୁଝି ନ ପାରି ଭାରି ଚିଡ଼ି ଉଠନ୍ତି ଓ ମନେ ମନେ ତେର କାନ୍ଦନ୍ତି ।

ପିଲାଦିନେ ହେଲେନ୍‌ଙ୍କର ଦୁଇଜଣ ପ୍ରଧାନ ସଙ୍ଗୀ ଥିଲେ-ମାର୍ଥା ଓ ବେଲେ । ମାର୍ଥା ପୂଜାରୀର ଝିଅ ଓ ବେଲେ ଘରର କୁକୁର । ହେଲେନ୍‌ଙ୍କର ଆଉରି ଗୋଟିଏ ଭଉଣୀ ଥିଲା । ତାହାର ନାମ ମିଲଡ୍ରେଡ୍ । ଛଅ ବର୍ଷ ବେଳେ ହେଲେନ୍‌ଙ୍କର କଥା କହିବାକୁ ପ୍ରବଳ ଆଗ୍ରହ ଜନ୍ମିଲା । ମାତ୍ର ସେ ତ ମୂକ, କଥା କହି ପାରୁଛନ୍ତି କିପରି ? ତାଙ୍କ ପିତାମାତା ଝିଅପାଇଁ ବଡ଼ ବ୍ୟସ୍ତ ହେଉଥିଲେ । ସେମାନେ ଝିଅକୁ ନେଇ ଜଣେ ଚକ୍ଷୁଚିକିତ୍ସକ ନିକଟକୁ ଗଲେ । ରେଲଗାଡ଼ିରେ ଯିବାବେଳେ ହେଲେନ୍ ଟି.ଟି.ଆଇ.ଙ୍କ କୋଟ, ଟିକେଟ୍ କାଟିବା କଳଟିକୁ ସ୍ପର୍ଶକରି ନାନା କଥା ଶିକ୍ଷା କରିଥିଲେ ଏବଂ ଯାତ୍ରୀମାନଙ୍କ ସହିତ ବେଶ ପରିଚିତ ହୋଇଥିଲେ । ଚକ୍ଷୁ ଚିକିତ୍ସକ ହେଲେନଙ୍କୁ ପରୀକ୍ଷା କରିବା ପରେ ତାଙ୍କର ଦୃଷ୍ଟିଶକ୍ତି ଫେରାଇ ଆଣିବାକୁ ନିଜର ଅକ୍ଷମତା ପ୍ରକାଶ କଲେ ଏବଂ ତାଙ୍କ ଉପଦେଶରେ ହେଲେନ୍‌ଙ୍କ ପିତାମାତା ଓ୍ୱାସିଂଟନ୍‌ରେ ଥିବା ଡକ୍ଟର ବେଲ୍‌ଙ୍କ ସହିତ ପରାମର୍ଶ କରିଥିଲେ । ଡକ୍ଟର ବେଲ୍ ବଡ଼ ଉଚ୍ଚକୋଟୀର ଦୟାଳୁ ବ୍ୟକ୍ତି ଥିଲେ । ସେ ହେଲେନ୍‌ଙ୍କ ପାଇଁ ଜଣେ ସୁଯୋଗ୍ୟ ଶିକ୍ଷୟିତ୍ରୀ ସ୍ଥିର କରିଦେଲେ ।

ଉକ୍ତ ଶିକ୍ଷୟିତ୍ରୀଙ୍କ ନାମ—ମିସ୍ ସୁଲିଭାନ୍ । ସେ ହେଲେନ୍‌ଙ୍କର ଶିକ୍ଷା ଦାୟିତ୍ୱ ପୂର୍ଣ୍ଣପ୍ରାଣରେ ସାତ ବର୍ଷଠାରୁ ଗ୍ରହଣ କରିଥିଲେ । ଏହି ସୁଲିଭାନ୍‌ଙ୍କ ଯୋଗୁ ହେଲେନ୍ ଆଜ ପୃଥିବୀରେ ଖ୍ୟାତି ଅର୍ଜ୍ଜନ

କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଯେଉଁଦିନ ହେଲେନ୍‌ଙ୍କୁ ପ୍ରଥମ ଥର ପାଇଁ ସାକ୍ଷାତ୍ କଲେ ସେହିଦିନ ସେ ତାଙ୍କପାଇଁ ଗୋଟିଏ କଣ୍ଢେଇ ଉପହାର ଆଣିଥିଲେ । ଉକ୍ତ କଣ୍ଢେଇଟିକୁ ସେ ହେଲେନ୍‌ଙ୍କୁ ଦେଇ ତାଙ୍କର ହାତରେ ଆଙ୍ଗୁଠି ଦ୍ୱାରା ଇଂରାଜୀରେ ଲେଖିଲେ — d-o-l-l. ସୁଲିଭାନ୍ ହେଲେନ୍‌ଙ୍କୁ ବହୁ ନୂତନ ଶବ୍ଦ ଓ ଜିନିଷର ନାମ ଶିକ୍ଷା ଦେଇଥିଲେ । ପୁନଶ୍ଚ ତାଙ୍କୁ ଅନୁଭୂତିମୂଳକ ଜ୍ଞାନ ପ୍ରଦାନ କରିବା ନିମନ୍ତେ ସେ ହେଲେନ୍‌ଙ୍କୁ ସାଙ୍ଗରେ ଧରି ନଈ ନାଳ, ବଣ, ଜଙ୍ଗଲ, ସମୁଦ୍ର, ପାହାଡ଼, ବୃକ୍ଷ ଓ ଲତା ଥିବା ସ୍ଥାନରେ ଭ୍ରମଣ କରୁଥିଲେ । ଗଣିତର ସଂଖ୍ୟାଗୁଡ଼ିକ ମଧ୍ୟ କାଠି ସାହାଯ୍ୟରେ ସେ ଶିକ୍ଷା ଦେଉଥିଲେ । ହେଲେନଙ୍କର ଗଣିତ ପ୍ରତି ପିଲାଦିନରୁ ବିଶେଷ ଶ୍ରଦ୍ଧା ନ ଥିଲା । ସେ ୧୮୮୮ ଖ୍ରୀଷ୍ଟାବ୍ଦରେ ବୋଷ୍ଟନ୍ ସହରକୁ ଯାତ୍ରା କରିଥିଲେ । ଏହି ସମୟରେ ତାଙ୍କର ବୟସ ମୋଟେ ଆଠବର୍ଷ ହୋଇଥିଲା । ସେ ଅନ୍ଧ ବିଦ୍ୟାଳୟରେ ଉପସ୍ଥିତ ହୋଇ କେତେକ ଅନ୍ଧ ଓ ବଧିର ପିଲାଙ୍କ ସହିତ ପରିଚିତ ହୋଇଥିଲେ । ଏଠାରେ ସେ ଶିକ୍ଷା ଲାଭକରି ନାନା ଗଳ୍ପ ଲେଖିବାକୁ ଚେଷ୍ଟା କରିଥିଲେ ।

୧୮୯୩ ଖ୍ରୀଷ୍ଟାବ୍ଦ ପୂର୍ବରୁ ସେ ବିଭିନ୍ନ ଭାଷାରେ ଅଭିଜ୍ଞତା ଅର୍ଜନ କରିଥିଲେ । ମିସ୍ ସୁଲିଭାନ୍ ୬୦ଟି ବିଭିନ୍ନ ସଙ୍କେତ ଦ୍ୱାରା ହେଲେନ୍‌ଙ୍କୁ ଶିକ୍ଷା ଦେଇଥିଲେ । ଅନ୍ଧମାନଙ୍କ ପାଇଁ ଏକ ପ୍ରକାର ସ୍ୱତନ୍ତ୍ର ଲିପି ଅଛି । ତାହାର ଅକ୍ଷରଗୁଡ଼ିକ ଉଚ୍ଚା ଉଚ୍ଚା । ତାକୁ Manual Alphabet କହନ୍ତି । ଲୁଇସ୍ ବ୍ରେଲ୍ ନାମକ ଏକ ବ୍ୟକ୍ତି ଅନ୍ଧମାନଙ୍କ ନିମନ୍ତେ ଏକ ନୂତନ ଧରଣର ଅକ୍ଷର ଉଦ୍ଭାବନ କରିଥିଲେ । ତାକୁ ବ୍ରେଲ ଅକ୍ଷର କହନ୍ତି । ହେଲେନ ମିଷ୍ଟର ଆରନ୍‌ସଙ୍କଠାରୁ ଲାଟିନ ଶିକ୍ଷା କରିଥିଲେ । ସେ ୧୮୯୪ ଖ୍ରୀଷ୍ଟାବ୍ଦରେ ମିସ୍ ସୁଲିଭାନ୍‌ଙ୍କ ସହିତ ନ୍ୟୁୟର୍କ ଯାତ୍ରା କରି ସେଠାରେ ଏକ ସ୍ୱତନ୍ତ୍ର ବିଦ୍ୟାଳୟରେ ଅଧ୍ୟୟନ କରି ନାନା ବିଷୟରେ ଶିକ୍ଷାଲାଭ କଲେ । ଏଠାରେ ସେ ଜର୍ମାନୀ ଭାଷା ଶିଖିଥିଲେ । ଦୁଇବର୍ଷ କଟିବା ପରେ ସେ ୧୮୯୬ ଖ୍ରୀଷ୍ଟାବ୍ଦରେ କେମ୍ବ୍ରିଜ ନାମକ ବିଦ୍ୟାଳୟରେ ଅଧ୍ୟୟନ କରିବାକୁ ସୁଲିଭାନଙ୍କ ସହିତ ଯାଇଥିଲେ । ସୁଲିଭାନ୍ ଶ୍ରେଣୀ ମଧ୍ୟରେ କେଲର୍‌ଙ୍କ ପାଖରେ ବସି ସବୁ ଶୁଣି ଶିକ୍ଷାର୍ଥୀମାନଙ୍କୁ ତାହା ବୁଝାଇ ଦେଉଥିଲେ । ପରୀକ୍ଷାରେ ତାହାଙ୍କୁ ଟାଇପ୍ ରାଇଟର୍ ସାହାଯ୍ୟରେ ଉତ୍ତର ଦେବାକୁ ହେଉଥିଲା । ତାଙ୍କଦ୍ୱାରା ଟାଇପ୍ ହୋଇଥିବା ପରୀକ୍ଷା ଖାତାଗୁଡ଼ିକ ଏବେ ଖୁବ୍ ଯତ୍ନ ସହକାରେ ହାରଭାର୍ଡ୍ ସଂଗ୍ରହଶାଳାରେ ରଖା ଯାଇଅଛି ।

ହେଲେନ୍ ବଡ଼ ସନ୍ତରଣପଟୁ । ସେ ଅନ୍ୟର ସାହାଯ୍ୟରେ ନୌକା ଚାଳନ କରିପାରନ୍ତି । ତାଙ୍କର ଅନେକ ବିଶିଷ୍ଟ ବନ୍ଧୁ ଅଛନ୍ତି । ତନ୍ମଧ୍ୟରୁ ଡକ୍ଟର୍ ହେଲ୍ ଅନ୍ୟତମ । ଏହାଙ୍କ ସହିତ ତାଙ୍କର ବନ୍ଧୁତା ଖୁବ୍ ପିଲାଦିନରୁ ହୋଇଥିଲା କହିଲେ ଚଳେ । ମିସ୍ ସୁଲିଭାନ୍ ୧୯୩୬ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିବାରୁ ହେଲନ୍‌ଙ୍କୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଯାଇଥିଲା । କାରଣ ହେଲେନ୍‌ଙ୍କ ଭାଷାରେ କହିବାକୁ ଗଲେ ସୁଲିଭାନ୍ ତାଙ୍କର 'ଆଖି' ଓ 'କାନ' ଥିଲେ । ତାଙ୍କ ମୃତ୍ୟୁ ଦ୍ୱାରା ସେ ବଡ଼ ନିଃସହାୟ ହୋଇ ପଡ଼ିଥିଲେ । ହେଲେନ୍‌ଙ୍କୁ ଯେତେବେଳେ ମୋଟେ ୧୩ ବର୍ଷ ସେହି ସମୟରୁ ସେ ତାଙ୍କର ଆତ୍ମଚରିତ ଲେଖିବାକୁ ବଦ୍ଧପରିକର ହୋଇଥିଲେ ଏବଂ ତାହା ୧୦ ବର୍ଷ ପରେ ୧୯୦୩ ଖ୍ରୀଷ୍ଟାବ୍ଦରେ ମୁଦ୍ରିତ ହୋଇଥିଲା ।

ଅଧୁନା ହେଲେନ୍ କେଲର୍ ମୂକ ଓ ବଧିରମାନଙ୍କର ଉନ୍ନତି ନିମନ୍ତେ American Foundationର ଜଣେ ପ୍ରଧାନ ପରାମର୍ଶଦାତ୍ରୀ । ସେ ବହୁ ନିଃସହାୟ ଲୋକଙ୍କୁ ଯେ ନୂତନ ଆଲୋକ ପ୍ରଦାନ କରିବେ, ଏହା ଆଶା କରିବା ସ୍ୱାଭାବିକ ନୁହେଁ କି ?



(୧୯ ପୃଷ୍ଠାର ଅବଶିଷ୍ଟାଂଶ)

ପାରେଶ୍ୱ ! ଯୁଗ ଯୁଗର ପ୍ରଳୟ ଯାଇଛି । କିଂନ୍ତୁ ଏ ବନ୍ଦେ ସେହିପରି ଅଛନ୍ତି । ପାରେଶ୍ୱ ଭିତରେ ବିଚିତ୍ର କୋଠା । ଦେଖିଲେ···ସ୍ୱର୍ଗ ବୋଲି ମନେ ହେବ । ହୀରାର ଖମ୍ବ, ନୀଳାର ଚଟାଣ, ବୈଦୁର୍ଯ୍ୟର କାନ୍ଥ, ସୁନାର ଛାତ, ମୁକୁତା ଓ ମୋତିର ମାଳା ଲମ୍ବିଛି··· କେତେ କେତେ । ଘରସାରା ମାଣିକର ବତି । ନ ଲିଭି ସେ ବତି ଜଳୁଛି—ଆଦି କାଳରୁ । ବିଚିତ୍ର ଏ ଦୃଶ୍ୟ ! ମଳୟ ସବୁବେଳେ ବହୁଛି । ବଗିଚାରେ ଅସୁମାରି ଫୁଲ । ବିଭିନ୍ନ ରଙ୍ଗର ! ହେଲେ ମନେ ରଖିବାକୁ ହେବ—ଏଠାରେ ପ୍ରତି କଥାଟି ବିଚିତ୍ର । କା' ଉପରେ ହେଲେ, ଏଠାରେ ବିଶ୍ୱାସ କରିବାକୁ ହେବନାହିଁ ! ନିଜର ବୁଦ୍ଧି ବିବେକ ଖଟାଇବାକୁ ହେବ । ଯେଉଁମାନେ ଯିବେ ସେମାନେ ସବୁବେଳେ ଜୀବନକୁ ହାତମୁଠାରେ ରଖିବାକୁ ତିଆରି ଥିବେ । ଅବଶ୍ୟ ଯେତେବେଳେ ବିପଦ ପଡ଼ିବ—ମୁଁ ସାହାଯ୍ୟ କରିବି ନିଶ୍ଚୟ । ତୁମ-ମାନଙ୍କ ଭିତରୁ କେତେଜଣ ସେଠାକୁ ଯାଆନ୍ତୁ । ସେମାନେ 'ବଜ୍ରଚଞ୍ଚୁ ଶୁକ' ଆଉ 'ବାଣୀକଣ୍ଠ ସାରି'କୁ ନିମନ୍ତ୍ରଣ କରି ଆଣନ୍ତୁ !"

"ତେବେ ଯିବେ କିଏ କିଏ ପ୍ରଭୁ ?"

"ଯିବେ କିଏ ? କିଏ ? ହଁ, ସେ କଥାଟି ବି ଛାଡ଼ିଯାଉ । ମୋ' ମତରେ ହରିଣ ଯାଉ । ତା' ସାଥିରେ ଯାଆନ୍ତୁ କୋଇଲି ଏବଂ ହଳଦୀବସନ୍ତ ।"

ସମସ୍ତଙ୍କ ମନକୁ ଏ କଥାଟି ପାଇଲା । ହଳଦୀ-ବସନ୍ତ, କୋଇଲି ଏବଂ ମିରିଗ ଗରୁଡ଼ଙ୍କ ଆଶୀର୍ବାଦ ନେଲେ । ଜୀବଜନ୍ତୁଙ୍କ ଶୁଭେଚ୍ଛା ଗ୍ରହଣ କଲେ ।

ସମସ୍ତେ ଗୁହାଁରିଛନ୍ତି । କୋଇଲି କୁଉ···କୁଉ···ଡାକି ଆଖିର ବାହାରକୁ ଚାଲିଗଲା । ସୁନାପରି ପରଗୁଡ଼ିକ ହଲାଇ ହଲାଇ ହଳଦୀବସନ୍ତ ତା'ପଛରେ ଲୁଚିଗଲା । ମିରିଗ ତାର ଚଞ୍ଚଳ ପାଦ ପକାଇ ମେଘଠାରୁ ଚଞ୍ଚଳ ଗତିରେ ଉଭେଇ ଗଲା ।

ସମସ୍ତେ ଶୁଭ ମନାସି ଗାଇଲେ—

"ହଳଦୀ-ବସନ୍ତ···କୋଇଲି···ଆଉ ମିରିଗ ତିନି,
ଯାଅ···ଯାଅ ଶୁଭ କାମରେ ଯାଅ···ବିପଦ ଜିଣି !
ନିଜେ ଦୁଃଖ ସହି···ଦୁନିଆଁ ବୁକୁ ପୋଛି···ପରାଣ,
ଶୁଖିଲା-ଧରଣୀ-ଓଠରେ ଲେଖ···ମଧୁର ହାସ !"

ଗୀତର ସୁର ଭାସି ଭାସି ଯାଉଥିଲା । ତିନିବନ୍ଧୁଙ୍କ ଉପରେ ଆଶୀର୍ବାଦ ଏବଂ ଶୁଭେଚ୍ଛାର ବର୍ଷା ପରି !

(କ୍ରମଶଃ)

---

# କେନ୍ଦ୍ର ବଜେଟ

(·········ଲକ୍ଷ ଟଙ୍କା ହିସାବରେ)

| | ବଜେଟ ୧୯୫୪-୫୫ | ସଂଶୋଧିତ ବଜେଟ ୧୯୫୪-୫୫ | ବଜେଟ ୧୯୫୫-୫୬ |
|---|---|---|---|
| ମୋଟ ଅଟକଳ ରାଜସ୍ୱ ··· | ୪,୫୧,୭୩ | ୪,୫୧,୦୮ | ୪,୬୮,୭୬ |
| ବଜେଟ ପ୍ରସ୍ତାବ ଫଳରେ | ··· | | + ୨୧,୭୦ |
| ମୋଟ ଅଟକଳ ବ୍ୟୟ ··· | ୪,୬୭,୦୯ | ୪,୫୬,୦୮ | ୪,୯୮,୯୩ |
| ନିଅଣ | — ୧୫,୩୬ | ୫,୦୦ | ୮,୪୬ |



## ଥଣ୍ଡା ସଙ୍ଗେ ଗରମ—ଦାନ୍ତର ଶତ୍ରୁ

ଡୁ ପଣ୍ଟ କମ୍ପାନୀର ରସାୟନ ଗବେଷଣା ବିଭାଗର ଡାକ୍ତର ଡଗଲାସ୍ ଏବଂ ହବର୍ଟ ପଲ୍ ଅନେକଗୁଡ଼ିଏ ପରୀକ୍ଷା ପରେ ଦାନ୍ତ କିପରି ନଷ୍ଟ ହୁଏ ଏ ବିଷୟରେ କେତେକ କଥା ପ୍ରକାଶ କରିଛନ୍ତି । ସେ କହିଛନ୍ତି, ଏକାସଙ୍ଗେ ଖୁବ୍ ଥଣ୍ଡା ଓ ଖୁବ୍ ଗରମ ଖାଦ୍ୟ ଖାଇବା-ଦ୍ୱାରା ଆମର ଦାନ୍ତର ବିଶେଷ ଅନିଷ୍ଟ ହୁଏ । ଏହାଦ୍ୱାରା ଦାନ୍ତର ବଳ କମିଯାଏ ଏବଂ ଦାନ୍ତ ଫାଟି ଭାଙ୍ଗିଯାଏ । ସେ ପରୀକ୍ଷା କରି ଦେଖିଛନ୍ତି ଯେ ୫୦ଟି ଦାନ୍ତକୁ ଏହିପରି ଲାଗ ଲାଗ ତାପତାରତମ୍ୟ ଭୋଗ କରାଇବା ପରେ କଠିନ ଚାପ ଦେଲାରୁ ୫୦ଟିରୁ ୨୧ଟି ଭାଙ୍ଗିଗଲା କିନ୍ତୁ ତାପ ତାରତମ୍ୟ ଭୋଗି ନ ଥିବା ଦାନ୍ତ ମଧ୍ୟରୁ କେବଳ ୧୧ଟି ଭାଙ୍ଗିଲା । ବିଂଶ ଶତାବ୍ଦୀର ଲୋକ-ମାନଙ୍କ ଦାନ୍ତ ଦୁର୍ବଳ ହୋଇ ପଡ଼ିବାର ପ୍ରଧାନ କାରଣରୂପେ ସେମାନେ ଦର୍ଶାଇଛନ୍ତି ଯେ ଲୋକ-ମାନଙ୍କ ଖାଇବା ଅଭ୍ୟାସ ପୂର୍ବଠାରୁ ବଦଳି ଯିବାରୁ ଏପରି ଘଟୁଛି । ସେମାନେ ଏକା ସାଙ୍ଗରେ ୧୫୦ ଡିଗ୍ରୀ ତାପବିଶିଷ୍ଟ ଗରମ ଖାଦ୍ୟ ଖାଇବା ପରେ ପରେ ବରଫ-ଥଣ୍ଡା ପାନୀୟ ବ୍ୟବହାର କରୁଛନ୍ତି । ଏପରି ଖାଇବା ଦାନ୍ତପକ୍ଷରେ ବିଶେଷ କ୍ଷତିକାରକ ।

## ସମୁଦ୍ରତଳେ ଟେଲିଫୋନ

ଉତ୍ତର ଆମେରିକା ଓ ଇଂଲଣ୍ଡ ମଧ୍ୟରେ ଏକ ନୂତନ ଧରଣର ଟେଲିଫୋନ ଯୋଗାଯୋଗ ବ୍ୟବସ୍ଥା କରା ଯାଉଛି । ୧୯୫୬ ମସିହା ଶେଷ ବେଳକୁ ଆଟ-ଲାଣ୍ଟିକ ମହାସମୁଦ୍ରର ଏପାଖରୁ ସେପାଖ ପର୍ଯ୍ୟନ୍ତ ତାର ପଡ଼ି ସାରିଥିବ । ଏହି 'କେବଲ୍'ରେ 'ପଲିଥିନ୍' ନାମକ ଏକ ନୂତନ କୁପରିବାହୀ ବସ୍ତୁ ବ୍ୟବହୃତ କରା ଯିବ । ଏହା ଫଳରେ ଇଂଲଣ୍ଡ ଓ ଆମେରିକା ମଧ୍ୟରେ ସିଧାସଳଖ ଏବଂ ନିର୍ଭରଯୋଗ୍ୟ ଟେଲି-ଫୋନ ସମ୍ପର୍କ ସ୍ଥାପିତ ହୋଇ ପାରିବ ଏବଂ ଏକ ସମୟରେ ୩୬ ଜଣ ଲୋକ କଥାବାର୍ତ୍ତା ହୋଇ ପାରିବେ । ଏହି ଯୋଜନାରେ ମୋଟ ୩୨ କୋଟି ଡଲାର ଖର୍ଚ୍ଚ ହେବ ବୋଲି ଅଟକଳ କରାଯାଉଛି । ଏଥିରୁ ୧୪୨୮୦,୦୦୦ ଡଲାର ଯୁକ୍ତରାଷ୍ଟ୍ର ଆମେରିକା ବହନ କରିବ ବୋଲି ପ୍ରକାଶ ।

## ରକ୍ତଚାପର ନୂଆ ଔଷଧ

ସାଉଥ୍ କାରୋଲିନାର ଡାକ୍ତର କିଥ୍ ଗ୍ରୀମସନ୍ ଗୋଟିଏ ନୂଆ ଔଷଧ ପ୍ରସ୍ତୁତ କରିଛନ୍ତି । ଏହାର ନାମ Su-3088; ଏଥିରୁ ଗୋଟିଏ ଗ୍ରେଟ ବଟିକା ସକାଳେ ଖାଇବା ପୂର୍ବରୁ ଖାଇଦେଲେ ସେ ଦିନ ତମାମ ଆଉ ରକ୍ତଚାପର ଭୟ ରହିବ ନାହିଁ । ଏଥି ପୂର୍ବରୁ ହେକ୍ସାମେଥୋନିୟମ ନାମକ ଔଷଧ ଏହି ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିଲା । କିନ୍ତୁ ପ୍ରତିଦିନ ଏଥିରୁ ୪ଟି ବା ୬ଟି ବଟିକା ଖାଇବାକୁ ପଡୁଥିଲା । ରକ୍ତଚାପ କମାଇବା ପାଇଁ ଇଞ୍ଜେକସନ୍ ନେବାକୁ ବିଭିନ୍ନ ଔଷଧ ରହିଛି ମାତ୍ର ଏହି ସୁ—୩୦୮୮ ପରି ଫଳପ୍ରଦ ଖାଇବା ଔଷଧ ଆଉ ପୂର୍ବରୁ କିଛି ନ ଥିଲା ।

## ଓଟ ମରୁଭୂମିରେ କିପରି ଜଳବିନା ରହେ ?

ଅନେକେ ବିଶ୍ୱାସ କରନ୍ତି ଯେ ଓଟର ପାକ-ସ୍ଥଳୀରେ ପାଣି ରହିବା ପାଇଁ ଗୋଟିଏ ଥଳି ଅଛି । କିନ୍ତୁ ପ୍ରକୃତରେ ତାହା ନୁହେଁ । ଦୁଇଜଣ ବୈଜ୍ଞାନିକ ସାହାରା ମରୁଭୂମିରେ ଗୋଟିଏ ଓଟକୁ ପରୀକ୍ଷା କରି ଏହି ସତ୍ୟ ଲାଭ କରିଛନ୍ତି । ଓଟକୁ ପରୀକ୍ଷା କରି ସେମାନେ ଜାଣି ପାରିଛନ୍ତି ଯେ ତା ଦେହରୁ ପ୍ରାୟ ଝାଳ ବାହାରେ ନାହିଁ । ତାର ଶରୀରରୁ ଜଳୀୟାଂଶର ବିଶେଷ ହ୍ରାସ ଘଟେ ନାହିଁ । ତେଣୁ ଓଟ ପାଣି ନ ପିଇ ମାସ ମାସ ଧରି ବଞ୍ଚିପାରେ । ଗୋଟିଏ ଓଟକୁ ପରୀକ୍ଷା କରିବା ଦ୍ୱାରା ଜଣାଯାଇଛି ଯେ ସେହି ଓଟଟି ୧୦୦° ଉତ୍ତପ୍ତ ସ୍ଥାନରେ କେବଳ ଶୁଖିଲା ଖଜୁରୀକୋଳି ଖାଇ ୧୬ଦିନ କାଳ ପାଣି ନ ପିଇ ବଞ୍ଚି ରହି ପାରିଥିଲା । ଶୋଷିଲା ଓଟ ୧୦ ମିନିଟରେ ପ୍ରାୟ ୩୦ ଗ୍ୟାଲନ୍ ପାଣି ପିଇପାରେ ।

—୦—

# ରାଣୀ-ମହୁମାଛିର ମଧୁରସ

ଶ୍ରୀ ବିପିନବିହାରୀ ମହାନ୍ତି

ଆଦିକାଳରୁହିଁ ମନୁଷ୍ୟ ଅମୃତର ସନ୍ଧାନରେ ଲାଗିଆସିଛି । ଜୀବନକୁ ଦୀର୍ଘ, ଯୌବନପୂର୍ଣ୍ଣ ଓ ଉଲ୍ଲାସମୟ କରିବାକୁ ସେ ସର୍ବଦା ବ୍ୟାକୁଳ । କେତେ ବିଦ୍ୱାନ ବୈଜ୍ଞାନିକ ଏହି ଅମୃତର ସନ୍ଧାନରେ କେତେବର୍ଷ ବିତେଇ ଦେଲେଣି କିନ୍ତୁ ମନୁଷ୍ୟକୁ ଚିର-ଯୌବନ ଓ ଦୀର୍ଘଜୀବନ ଦେବାଭଳି ଔଷଧ ବା ଅମୃତ ପାଇପାରି ନାହାନ୍ତି । ତଥାପି ଚେଷ୍ଟାରେ ତ୍ରୁଟି ନାହିଁ ଏବଂ ଆଶା କରାଯାଏ ନିକଟଭବିଷ୍ୟତରେ ବୈଜ୍ଞାନିକମାନେ ଜଗତକୁ ଏଭଳି ଏକ ଅମୃତର ସନ୍ଧାନ ଦେବେ ଯାହାଦ୍ୱାରା ମନୁଷ୍ୟ ଦୀର୍ଘକାଳପର୍ଯ୍ୟନ୍ତ ବାର୍ଦ୍ଧକ୍ୟରୁ ବଞ୍ଚିତହୋଇ ପୂର୍ଣ୍ଣଯୌବନ ଓ ଅପୂର୍ବ ଆନନ୍ଦ ଉପଭୋଗ କରିପାରିବ ।

ମହୁମାଛିର ବସାରେ ପୁଂ ଓ ସ୍ତ୍ରୀ ମହୁମାଛି ବ୍ୟତୀତ ଏକ ରାଣୀ-ମହୁମାଛି ଥାଏ ଏବଂ ସେ ମଧୂରସ ସେବନ କରେ । ଏହି ରସ ଦେଖିବାକୁ ଜମାଟ ବାନ୍ଧିଥିବା ଦୁଧଭଳି ଓ ଶ୍ୱେତ ଚେନାପରି ସାମାନ୍ୟ ଖଟା । ରାଣୀ-ମହୁମାଛି ମଧୂରସ ସେବନ କରିବାଦ୍ୱାରା ଅନ୍ୟ ସାଧାରଣ ମହୁମାଛି ଅପେକ୍ଷା ଆକାର ଓ ରୂପରେ ଭିନ୍ନ, ଅଧିକ କାଳ ବଞ୍ଚେ ଏବଂ କାମଶକ୍ତିରେ ଅଦ୍ୱିତୀୟ ଅଟେ ।

ବୈଜ୍ଞାନିକମାନେ ୧୭୦୦ ସାଲରୁ ଏହି ରସ ବିଷୟରେ ଅନୁସନ୍ଧାନ କରି ଆସୁଅଛନ୍ତି କିନ୍ତୁ ଫ୍ରାନ୍‌ସର ଲ୍ୟୋନାର୍ଡ୍ ବୋଡ଼ସିଙ୍କୁ ୧୮୯୪ ରେ ଜଣାପଡ଼ିଲା ଯେ ଏହି ରସକୁ, ମହୁମାଛିମାନଙ୍କ ରାଣୀର ଉପଯୋଗପାଇଁ ତାହାର ପରିଚାରିକାସବୁ ଆପଣା ମସ୍ତିଷ୍କରେ ଥିବା ବିଶେଷ ଗ୍ରନ୍ଥିଗୁଡ଼ିକ ଦ୍ୱାରା ପ୍ରସ୍ତୁତ କରନ୍ତି ଏବଂ କେବଳ ରାଣୀ-ମହୁମାଛିର ସେବନ ନିମନ୍ତେ ସଞ୍ଚୟ କରି ଥାଆନ୍ତି ।

ଅଣ୍ଡାରୁ ବାହାରିବା ପରେ ପ୍ରଥମ ତିନିଦିନ ପର୍ଯ୍ୟନ୍ତ ସବୁ ଡିମ୍ବ, ଏହି ରସ ପିଅନ୍ତି । କିନ୍ତୁ ଏହା-ପରେ କୌଣସି ଅଜ୍ଞାତ ପଦ୍ଧତିଦ୍ୱାରା ଏହି ଡିମ୍ବରୁ ଗୋଟିକୁ ଭାବୀ ରାଣୀ ବୋଲି ମନେକରି ଏହାର ଶେଷ ଜୀବନ ପର୍ଯ୍ୟନ୍ତ ଉକ୍ତ ରସ ପିଇବାକୁ ଛାଡ଼ିଦିଅନ୍ତି । ଅନ୍ୟଗୁଡ଼ିକ କେବଳ ମହୁ ଖାଇ ବଞ୍ଚନ୍ତି ।

ମଧୂରସର ସେବନ ଫଳରେ ରାଣୀ-ମହୁମାଛି ଅନ୍ୟ ପୁଂ ଓ ସ୍ତ୍ରୀ ମହୁମାଛି ଅପେକ୍ଷା ଓଜନ ଓ ଆକାରରେ ପ୍ରାୟ ଦୁଇଗୁଣ ହୁଏ ଏବଂ ଅଣ୍ଡାରୁ ବାହାରିବା ପରେ ମାତ୍ର ୧୬ ଦିନରେ ପୂର୍ଣ୍ଣ-ଯୌବନା ହୁଏ । କିନ୍ତୁ ଏଥିପାଇଁ ଅନ୍ୟ ପୁଂ ମହୁମାଛିକୁ ୨୪ ଦିନ ଓ ସ୍ତ୍ରୀ ମହୁମାଛିକୁ ୨୧ ଦିନ ଲାଗିଥାଏ । ରାଣୀ ମହୁମାଛିର ଆୟୁ ୫।୬ ବର୍ଷ ହେଲେ ସାଧାରଣ ମହୁମାଛିଙ୍କର ଆୟୁ ୨।୩ ମାସ ।

ଏହି ରସର ବିଶେଷ ପ୍ରଭାବ ରାଣୀ-ମହୁମାଛିର ପ୍ରଜନନ ଶକ୍ତି ଉପରେ ପଡ଼ିଥାଏ । ଏକାଥରକୁ ଏହା ଦିନ ମଧ୍ୟରେ ୨୫୦୦ ଅଣ୍ଡା ଦିଏ ଏବଂ ଏଗୁଡ଼ିକର ଓଜନ ତାହାର ନିଜ ଓଜନର ପ୍ରାୟ ଦୁଇଗୁଣ । ଆଜିକାଲି ରାଣୀ-ମହୁମାଛିକୁ ଇନ୍‌ଜେକ୍‌ସନ୍ ଦେଇ ମଧ୍ୟ ଗର୍ଭବତୀ କରାଯାଉଛି ଯାହା ଫଳରେ ସେ ବିଶେଷ ପ୍ରକାରର ନୂଆ ମହୁମାଛି ଜନ୍ମାଇ ପାରିବ ।

୨୦ ବର୍ଷ କାଳ ଅନୁସନ୍ଧାନ କରିବା ପରେ ମଧ୍ୟ ବୈଜ୍ଞାନିକମାନେ ଜାଣି ପାରୁନାହାନ୍ତି ଯେ କେଉଁ ତତ୍ତ୍ୱ ଦ୍ୱାରା ଏହି ମଧୂରସ ତିଆରି ହେଉଛି । କିନ୍ତୁ ରସାୟନଶାସ୍ତ୍ରବିତ୍‌ମାନେ କେବଳ ଏତିକି ଜାଣି ପାରି-ଛନ୍ତି ଯେ ଏହି ମଧୂରସରେ ପ୍ରୋଟିନର ମାତ୍ରା ପ୍ରଚୁର ଅଛି ଏବଂ କେତେକ ଭିଟାମିନ୍ ମଧ୍ୟ ଅଛି । 'ବି' ଭିଟାମିନ୍‌ରୁ ଏକ ପେଣ୍ଟୋଥେନିକ ଏସିଡ୍ ଏହି ରସରେ ଯଥେଷ୍ଟ ମିଳିଛି ।

କେତେକ ବର୍ଷ ପୂର୍ବେ ନ୍ୟୁ-ଜର୍ସିର ରସାୟନ ଶାସ୍ତ୍ରୀ ଡକ୍ଟର ଥମାସ ଗାର୍ଡ଼ନର ଏହି ପେଣ୍ଟୋଥେନିକ ଏସିଡ୍ ବଗିଚ୍ଚର ଶ୍ରେଷ୍ଠ ଶ୍ରେଷ୍ଠ ମହୁମାଛିଗୁଡ଼ିକୁ ଖୁଆଇ ଥିଲେ । ଫଳରେ ସେଗୁଡ଼ିକର ଜୀବନକାଳ ଶତକଡ଼ା ୨୮ ବଢ଼ି ଯାଇଥିଲା । ଆହୁରି ମଧ୍ୟ ଆମେରିକାନ୍ ଓ ଜାର୍ମାନ ବୈଜ୍ଞାନିକମାନେ ଏହାର ପ୍ରୟୋଗ ଅନ୍ୟ ଜୀବ ଉପରେ ମଧ୍ୟ କରିଛନ୍ତି । ପାଣିରେ ଥିବା "ଡାଫ୍ନିୟା" ନାମକ ପୋକକୁ ଏହି ପେଣ୍ଟୋଥେନିକ ଏସିଡ୍ ଖୁଆଇ ଦେଖାଗଲା ଯେ ଏହାର ଆୟୁ ତିନିଗୁଣ ବଢ଼ିଗଲା । ଅନ୍ୟ ଜଣେ ବୈଜ୍ଞାନିକ ଏହାର ଇଞ୍ଜେକ୍ସନ୍ ଶ୍ରେଷ୍ଠ ମାଈମୂଷାଙ୍କୁ ଦେଇ ଦେଖିଲେ ଯେ କେତେ ସପ୍ତାହ ଭିତରେ ଏଗୁଡ଼ିକର ଓଜନ ବଢ଼ିଗଲା ଓ ଅଣ୍ଡାଶୟ ଅଧିକ ସକ୍ରିୟ ହୋଇ ଉଠିଲା । ଆଉ ଜଣେ ବୈଜ୍ଞାନିକ ପୁରୁଷମୂଷାଗୁଡ଼ିକଙ୍କଠାରେ ଏହି ଏସିଡ୍ ପ୍ରୟୋଗ କଲେ; ଫଳରେ ଏଗୁଡ଼ିକର ଶରୀରର ଅବୟବ ଓ କାମଗ୍ରନ୍ଥି ସବୁ ଅଧିକ ବଳିଷ୍ଠ ହେଲା ।

ଫ୍ରାନ୍ସ ଓ ଆମେରିକାର କେତେକ ରସାୟନଶାସ୍ତ୍ରୀମାନେ ଆଜିକାଲି ଅନୁସନ୍ଧାନରେ ବ୍ୟସ୍ତ ରହୁଛନ୍ତି ଯେ ରାଣୀ-ମହୁମାଛିର ଏହି ମଧୁରସକୁ ମାନବ ଶରୀରରେ ପ୍ରୟୋଗ କରି ମାନବକୁ ଚିରଯୌବନ ଓ ଅପୂର୍ବ ଆନନ୍ଦ ଦେବେ ।

—o—

## ଦରକାରବେଳେ କର୍ମରେ ଆସିବ

୧ । ଭାରତର ମୁଦ୍ରାପ୍ରଣାଳୀ ବଦଳି ଟଙ୍କାକ ୧୦୦ ସେଣ୍ଟ ରଖାଯିବ । ଅଧୁଲି ଓ ସୁକି ପ୍ରଭୃତିକୁ ମଧ୍ୟ ୫୦ ସେଣ୍ଟ ଓ ୨୫ ସେଣ୍ଟ ବୋଲି ଧରାଯିବ ।

୨ । ଚଳିତ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ମାଟ୍ରିକ୍ୟୁଲେସନ ପରୀକ୍ଷା ୬୩୨୩ ଜଣ ଲୋକ ପରୀକ୍ଷାର୍ଥୀ ଦେଇଥିଲେ । ସେମାନଙ୍କ ମଧ୍ୟରୁ ୩୩୫୧ ଜଣ ପାସ କରିଛନ୍ତି; ଗତ ବର୍ଷ ଶତକଡ଼ା ୪୮·୪ ପାସ୍ କରିଥିବାସ୍ଥଳେ ଚଳିତ ବର୍ଷ ଶତକଡ଼ା ୫୩ ପାସ କରିଛନ୍ତି ।

୩ । ଭାରତରେ ପ୍ରତି ୨୭ ମାଇଲରେ ଏବଂ ପ୍ରତି ୭୭୭୩ ଜଣ ଲୋକଙ୍କ ପିଚ୍ଛା ଗୋଟିଏ ପୋଷ୍ଟ ଅଫିସ ଅଛି ।

—o—

## କୃତ୍ରିମ ହୀରକ

ସବୁଠାରୁ ଶକ୍ତ ପଥର ହେଉଛି ହୀରା । ଏହା ସାହାଯ୍ୟରେ କାଚକୁ କଟାଯାଏ । ହୀରା ବହୁ ମୂଲ୍ୟବାନ୍ । ଖଣିରୁ ପ୍ରାକୃତିକ ହୀରା ମିଳେ । କୃତ୍ରିମ ଉପାୟରେ ଏହିପରି ପଥର ତିଆରି କରିବା ପାଇଁ ମନୁଷ୍ୟ ବହୁଦିନରୁ ଚେଷ୍ଟା କରି ଆସିଛି । ଗତ ୧୨୫ ବର୍ଷ ହେଲା ପୃଥିବୀର ବିଭିନ୍ନ ଅଞ୍ଚଳରେ ଲୋକେ କୃତ୍ରିମ ହୀରା ପ୍ରସ୍ତୁତ କରିବା ପାଇଁ ଚେଷ୍ଟା ଚଳାଇଛନ୍ତି । ନକଲି ହୀରା କେତେ ମଧ୍ୟ ତିଆରି ହେଲାଣି ମାତ୍ର ତାହା 'ନକଲି'; ରାଣୀ ପାଖରେ କାଣୀ ପରି । ଗତ ଗୃରବର୍ଷର ପରୀକ୍ଷା ଓ ଗବେଷଣା ଫଳରେ 'ଜେନେରାଲ ଇଲେକ୍ଟ୍ରିକ ରିସାର୍ଚ୍ଚ ଲାବୋରେଟରୀ'ର କେତେ ଜଣ ବୈଜ୍ଞାନିକ ଏକ ପ୍ରକାର କୃତ୍ରିମ ପଥର ତିଆରି କରିଛନ୍ତି, ଯାହାକୁ ସେମାନେ ହୀରାର ପୂର୍ଣ୍ଣ ସମକକ୍ଷ ବୋଲି ଦାବି କରୁଛନ୍ତି । ସେମାନଙ୍କ ମତରେ ଏହା 'ନକଲି' ନୁହେଁ, ଠିକ୍ ହୀରା । ଏହା ସାହାଯ୍ୟରେ ସେମାନେ ସମସ୍ତ ଟାଣ ପଦାର୍ଥ ଏପରି କି ହୀରା ଉପରେ ସୁଦ୍ଧା ଗାର ପକାଇ ପାରୁଛନ୍ତି । ଏହି ହୀରା ତିଆରି କରିବାରେ ବର୍ତ୍ତମାନ ବହୁତ ଖର୍ଚ୍ଚ ପଡ଼ୁଛି । କିନ୍ତୁ ତିଆରି ଖର୍ଚ୍ଚ କମ୍ ପଡ଼ିଲେ ଏଥିରେ ପ୍ରଥମେ କଳକାରଖାନାର କାଟିବା ଓ ପାଲିସ୍ କରିବା ହତିଆରମାନ ନିର୍ମିତ ହେବ ବୋଲି ଆବିଷ୍କାରକମାନେ ଆଶା ପୋଷଣ କରୁଛନ୍ତି । ଏହା କରିବାକୁ ସେମାନଙ୍କୁ ୧୦୦ ଥରରୁ ଅଧିକ ଚେଷ୍ଟା କରିବାକୁ ପଡ଼ିଥିଲା ।

—o—

## ଗତସଂଖ୍ୟା ବୁଦ୍ଧିପରୀକ୍ଷା ଉତ୍ତର

୧ । (ଗ) କଠିନ ପରିଶ୍ରମ କରିବ ।

୨ । ଫକିରା—(ପ୍ରତି ଅକ୍ଷର ପାଇଁ ତାର ପରବର୍ତ୍ତୀ ଅକ୍ଷରକୁ ଠାର ରୂପେ ନିଆ ଯାଇଛି ।)

୩ । ଘ + ଚ = ୧୦; ଖ — ଙ = ୩ ।

୪ । ୧୯୫୩, ୧୯୪୩, ୧୮୦୦, ୧୬୫୦, ୬୭ ଖ୍ରୀ:ପୂ, ୩୨୩ ଖ୍ରୀ: ପୂ:; ୬୩୩ ଖ୍ରୀ: ପୂ:; ୧୯୫୪ ଖ୍ରୀ.ପୂ ।

୫ । ଛ, ଛଉ, ଛଉକା ।

—o—

# ପରିଚୟ

## ଆଲବର୍ଟ ଆଇନ ଷ୍ଟାଇନ୍

ଶ୍ରୀ ସୁଧାକର ଦାଶ, ବି.ଏସସି.

ଆପଣ ଯଦି ୫୦ ବର୍ଷ ପୂର୍ବେ ସୁଇଜରଲାଣ୍ଡର ପେଟେଣ୍ଟ ଅଫିସରେ କିରାଣୀ କାମ କରୁଥିଲେ ତେବେ ସେତେବେଳର ଗୋଟିଏ ସାଥୀ କଥା ମନେ ଥିବ । ଆପଣ ଦେଖିଥିବେ ସେହି ଯୁବକଟି କାଗଜରେ ଏଣୁ-ତେଣୁ କଅଣ ଲେଖୁଥାଏ, କାଟୁଥାଏ । ଯେତେବେଳେ ଉଚ୍ଚ କର୍ମଚାରୀ ତାଂହାଲେ ଅଫିସଭିତରକୁ ପଶିଆସନ୍ତି, ସେତେବେଳେ ଯେ ଯୁବକ କାଗଜପତ୍ର ଗୁଡ଼ିକ ଡ୍ରୟାର୍ ମଧ୍ୟରେ ଲୁଚାଇଦେଇ ପେଟେଣ୍ଟ ଦରଖାସ୍ତ ଗୁଡ଼ିକ ଆଗରେ ମେଲାଇ ଦିଏ । ଯେତେବେଳେ ଉକ୍ତର ହାଲେ ଚାଲିଯାଆନ୍ତି ସେତେବେଳେ ସେ ପୁଣି ନିଜର କାଗଜପତ୍ର ବାହାର କରେ ।

ସେହି ଇହୁଦୀ ଯୁବକଟି ଯେ ନିଜର ଅଫିସ କାମରେ ଅବହେଳା କରୁଥିଲେ ତାହା ନୁହେଁ । ଅଫିସ କାମକୁ ସେ ଚାରିଘଣ୍ଟାରେ ଶେଷକରି ଦିଅନ୍ତି । ଆଉ ଅବଶିଷ୍ଟ ଚାରିଘଣ୍ଟା ସେ ଭବିଷ୍ୟତର ରଙ୍ଗୀନ ସ୍ୱପ୍ନ ନ ଦେଖି, ବା ନିଜେ ଇହୁଦି ହୋଇଥିବାରୁ ସେଥିଯୋଗୁଁ ପିଲାଦିନେ ସ୍କୁଲରେ ପଢ଼ୁଥିବା ସମୟର ଅନ୍ୟ-ମାନଙ୍କର ପରିହାସକୁ ମନେ ନ ପକାଇ ସେ ଗାଣିତିକ ଫର୍ମୁଲମାନ କାଗଜରେ କଷୁଥିଲେ ।

ପେଟେଣ୍ଟ ଅଫିସରେ କିରାଣୀ କାମରେ ମଧ୍ୟ ସେ ସନ୍ତୁଷ୍ଟ ଥିଲେ । କାପ୍‌ଟେନ୍ ସ୍କଟ, ଲିଭିଂଷ୍ଟୋନ୍, ଶେର୍‌ପା ତେନ୍‌ସିଂ ପ୍ରଭୃତି ନୂତନ ସ୍ଥାନ ଆବିଷ୍କାର କରି ଆନନ୍ଦ ପାଇଥିଲେ । କିନ୍ତୁ ଯୁବକ ଆଇନଷ୍ଟାଇନ ବିଜ୍ଞାନ-ମଧ୍ୟରେ ନୂତନ ରାଜ୍ୟ ଆବିଷ୍କାର ପାଇଁ ଲାଗିଥାଆନ୍ତି । ମନୁଷ୍ୟ ଆଗରୁ କଳ୍ପନା କରିଥିବା ନୂତନ ସତ୍ୟର ସନ୍ଧାନରେ ସେ ଚେଷ୍ଟିତ ।

ଏ ପୁଣି କିପରି ସତ୍ୟ ? ମନୁଷ୍ୟ କଳ୍ପନା କରି ନ ଥିବ !. ସେ ସମୟ ଓ ବ୍ୟବଧାନ (Time & space) ର ସମସ୍ୟା ସମାଧାନ ପାଇଁ ଲାଗିପଡ଼ିଥିଲେ । ସମୟ ଓ ବ୍ୟବଧାନ ମଧ୍ୟରେ ସମ୍ପର୍କ କଅଣ, ବ୍ୟବଧାନ ମଧ୍ୟରେ କେଉଁ ବସ୍ତୁ ପୂର୍ଣ୍ଣ ହୋଇଛି, ପୃଥିବୀ କେଉଁଥିରେ ତିଆରି ଏହିସବୁ ବିଷୟ ଉପରେ ସେ ଫର୍ମୁଲା ନିର୍ଣ୍ଣୟ କରିବାରେ ଲାଗିଥିଲେ ।

ତାଙ୍କୁ ବୋଧ ହେଲା ଯେ ସୌର ଜଗତ ମଧ୍ୟରେ ସମସ୍ତ ପଦାର୍ଥ ଗତି କରୁଛନ୍ତି । ଯଦି ସମସ୍ତେ ସ୍ଥିର ରହନ୍ତି ତେବେ ଏହି ସୌରଜଗତ ଥଣ୍ଡାହୋଇ ମୃତ-ପ୍ରାୟ ହୋଇଯିବ, ଗତିଶୀଳତା ହେଉଛି ସମସ୍ତ ପଦାର୍ଥର ପ୍ରାକୃତିକ ଅବସ୍ଥା । ଏହି ଗତିକୁ ନିରୀକ୍ଷଣ କରିବା ଓ ଗତିର ବେଗ ନିର୍ଣ୍ଣୟ କରିବା ଅତି ଦୁରୁହ ବ୍ୟାପାର କାରଣ ପର୍ଯ୍ୟବେକ୍ଷକ ନିଜେ ମଧ୍ୟ ଗତି କରୁଛି । ସୁତରାଂ ଗୋଟିଏ ପଦାର୍ଥ ଯେଉଁ ଦିଗରେ ଏବଂ ଯେଉଁ ବେଗରେ ଗତି କରୁଛି ତାହା ପର୍ଯ୍ୟବେକ୍ଷକର ଗତି ଉପରେ ନିର୍ଭର କରୁଛି । ତେଣୁ ଏହା ଏକ ପାରସ୍ପରିକ (Relative) ବ୍ୟାପାର ।

ବେଗଦ୍ୱାରା ପ୍ରତ୍ୟେକ ବସ୍ତୁ ସଙ୍କୁଚିତ ହୋଇ-ଯାଏ । ଏହି ସଙ୍କୋଚନ ବେଗର ବୃଦ୍ଧିରେ ବୃଦ୍ଧି ପାଏ । ସେ ପୁଣି ଭାବିଲେ ଯେ ବ୍ୟବଧାନ ପରି ସମୟ ମଧ୍ୟ ଏକ ପାରସ୍ପରିକ ବସ୍ତୁ । ମନୁଷ୍ୟ ଯଦି ଆଲୋକର ବେଗଠାରୁ ଜୋରରେ ଗତି କରିପାରେ ତେବେ ସେ ଭବିଷ୍ୟତରେ ପହଞ୍ଚିଯିବ । କିନ୍ତୁ ତାହା କଅଣ ସମ୍ଭବ ? ଆଲୋକ ଯେ ସେକେଣ୍ଡକରେ ୧୮୬୦୦୦ ମାଇଲ ଗତି କରେ ।

ଉପରୋକ୍ତ ବିଷୟମାନଙ୍କ ଉପରେ ଆଇନ୍‌ଷ୍ଟାଇନ୍ ପ୍ରତିଦିନ ଫର୍ମୁଲା ନିର୍ଣ୍ଣୟ କରୁଥାଆନ୍ତି, ପୁଣି ମନକୁ ନ ଆସିଲେ ତାକୁ ଫୋପାଡ଼ି ଦେଉଥାଆନ୍ତି । ସର୍ବ-ଶେଷରେ ସେ ଗୋଟିଏ ସ୍ତରରେ ପହଞ୍ଚିଲେ । ୧୯୦୫ରେ ତାଙ୍କର ଫର୍ମୁଲାଗୁଡ଼ିକୁ ଲେଖି ଗୋଟିଏ ପତ୍ରିକାରେ ପ୍ରକାଶ କଲେ । ତାଙ୍କର ବୟସ ସେତେ-ବେଳକୁ ୨୬ ବର୍ଷ । ତାପରେ ତାଙ୍କର ନାମ ବଢ଼ିଲା । ପରେ ସେ ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଗାଣିତିକ ଫର୍ମୁଲା ବାହାର କରିଥିଲେ । ତାହା ହେଉଛି $E = mc^2$, E = ଶକ୍ତି (energy), m = ଓଜନ, (man) c = ଆଲୋକର ଗତି । ଏହି ଫର୍ମୁଲାରୁ ଜଣାଯାଏ

ଏକ ପାଉଣ୍ଡର ଯେ କୌଣସି ପଦାର୍ଥରେ ୧୪୦ ଲକ୍ଷ ଟନ୍ ଟି. ଏନ୍. ଟି. ବିସ୍ଫୋରଣରେ ଜାତ ହେଉଥିବା ଶକ୍ତି ରହିଅଛି । ତାଙ୍କର ଏହି ଫର୍ମୁଲା ପରମାଣୁ ବୋମା ତିଆରି କରିବାରେ ସହାୟକ ହୋଇଛି ।

ଏହି ବିଶ୍ୱବିଖ୍ୟାତ ବୈଜ୍ଞାନିକ ୭୬ ବର୍ଷ ବୟସରେ ଗତମାସରେ ପ୍ରାଣତ୍ୟାଗ କରିଅଛନ୍ତି । ତାଙ୍କୁ ଗତବର୍ଷ ଇସ୍‌ରାଏଲ୍ ରାଜ୍ୟର ସଭାପତି ପଦ ଯାଚି ଯାଇଥିଲା କିନ୍ତୁ ତାଙ୍କର ବୃଦ୍ଧାବସ୍ଥା ଯୋଗୁ ସେ ତାକୁ ଗ୍ରହଣ କରି ନ ଥିଲେ । ସେ କହୁଥିଲେ "ମୁଁ ଯେଉଁ ବିଷୟରେ ସିଦ୍ଧାନ୍ତ ନେଇଛି ମୁଁ ସେଥିରେ ପ୍ରଥମେ ଅନେଶ୍ୱତ ଥର ଅକୃତକାର୍ଯ୍ୟ ହୋଇଛି, ଏବଂ ତା ପର ଚେଷ୍ଟାରେ ମୁଁ କୃତକାର୍ଯ୍ୟ ହୋଇଛି ।"

## ଜ୍ଞାନ-ପ୍ରଦୀପିକା

୧ । ୧୯୫୪ ରେ ଭାରତରୁ ୪୫ କୋଟି ପାଉଣ୍ଡ ଚା ରପ୍ତାନି ହୋଇଥିଲା ।

୨ । ଭାରତର ମାନ୍ଦ୍ରାଜ ନିକଟସ୍ଥ ପେରାମ୍ବୁର-ଠାରେ ଯେଉଁ ରେଲଡବା ତିଆରି କାରଖାନା ବସାଯାଉଛି ସେଥିରେ ୭ କୋଟି ୪୦ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଛି । ଚଳିତ ବର୍ଷ ଅକ୍ଟୋବର ମାସରୁ ଏହିରେ ଉତ୍ପାଦନ ଚାଲିବ । ଏଠାରେ ବାର୍ଷିକ ୩୫୦ଟି ରେଲଡବା ତିଆରି ହୋଇ ପାରିବ ଓ ୫ ହଜାର ଶ୍ରମିକ କାର୍ଯ୍ୟ ପାଇ ପାରିବେ ।

୩ । ୧୯୫୩-୫୪ ରେ ଭାରତକୁ ବିଦେଶରୁ ୩୧୯୫ ଟି ଟ୍ରାକ୍ଟର ଆମଦାନୀ ହୋଇଥିଲା । ଏଗୁଡ଼ିକର ମୋଟ ମୂଲ୍ୟ ୨୫୪ କୋଟି ଟଙ୍କାରୁ କିଛି ବେଶୀ ।

୪ । ଭାରତରେ ବର୍ଷକୁ ମୋଟ ୫ କୋଟିରୁ ୫୧ କୋଟି ପାଉଣ୍ଡ ପଶମ ଉତ୍ପନ୍ନ ହେଉଛି ବୋଲି ହିସାବ କରାଯାଇଛି ।

୫ । ଭାରତରେ ବର୍ତ୍ତମାନ ୨୮୧୪ଟି ସାଧାରଣ ବ୍ୟବହାର ଟେଲିଫୋନ କଲ୍ ଅଫିସ ଅଛି ।

—୦—

## ଖେଳ-କୌତୁକ

୧ । ଜାପାନର ଟମିଆକ ଟନେକା ଆନ୍ତର୍ଜାତୀୟ ପୁରୁଷ ସିଙ୍ଗଲସ ଟେବୁଲ ଟେନିସ୍ ଖେଳରେ ବିଜୟ ହାସଲ କରି ଚାମ୍ପିଆନ୍‌ସିପ୍ କପ୍ ପାଇଲେ ।

୨ । ଚଳିତ ବର୍ଷ ରଞ୍ଜିଟ୍ରଫି କ୍ରିକେଟ ପ୍ରତି-ଯୋଗିତାରେ ମାନ୍ଦ୍ରାଜ ହୋଲ୍‌କାରଙ୍କୁ ପରାସ୍ତ କରି ଚାମ୍ପିଆନ୍‌ସିପ୍ ପାଇଲା । ମାନ୍ଦ୍ରାଜ ଗତ ୨୧ବର୍ଷଧରି ଆଉ ଏପରି ବିଜୟ ହାସଲ କରି ପାରି ନ ଥିଲା ।

୩ । ଦିଲ୍ଲୀ ନାସନାଲ ଷ୍ଟାଡିଅମଠାରେ ହୋଇ-ଥିବା ଭଲିବଲ୍ ପ୍ରତିଯୋଗିତାରେ ଭାରତ ରୁଷିଆର ଖେଳାଳିମାନଙ୍କୁ ପରାସ୍ତ କରିଛନ୍ତି । ଏଥରକୁ ମିଶାଇ ଭାରତୀୟମାନେ ୨ଥର ବିଜୟ ହାସଲ କଲେ । ପ୍ରଥମ ଥର କଲିକତା ଟେଷ୍ଟ ପ୍ରତିଯୋଗିତାରେ ବିଜୟ ହାସଲ କରିଥିଲେ ।

—୦—

## ଘାଟି ସୁଆଙ୍ଗ

ଓକିଲ—ଆସାମୀ ଯେତେବେଳେ ସେ ଲୋକଟିକୁ ଛୁରିରେ ଭୁଷି ଦେଲା ତୁମେ ଦେଖିଛ ?

ସାକ୍ଷୀ—ଆଜ୍ଞା, ହଁ ।

ଓକିଲ—ତମେ ତାଠାରୁ କେତେ ଦୂରରେ ଥିଲ ?

ସାକ୍ଷୀ—ତାର ଡାହାଣ ଗୋଇଠି ଠାରୁ ୧୫୭ ଫୁଟ ସାଢ଼େ ୧୧ ଇଞ୍ଚ ଦୂରରେ ।

ଓକିଲ—ଏତେ ନିର୍ଦ୍ଦିଷ୍ଟ ଭାବରେ କିପରି କହୁଛ ।

ସାକ୍ଷୀ—ମୁଁ ଜାଣିଥିଲି ଏ ପ୍ରଶ୍ନଟା ଏତେ ସାଧାରଣ ଯେ କୌଣସି ବୋକା ନିଶ୍ଚୟ ପଚାରି ଦେବ । ତେଣୁ ମୁଁ ସାଙ୍ଗେ ସାଙ୍ଗେ ଠିକ୍ ଭାବରେ ମାପି ଦେଇଥିଲି ।

*

ଜଜ୍—ତମେ ଏ କଚେରୀକୁ ଏତେଥର ଆସୁଛ, ତମକୁ ଲଜ୍ଜା ଲାଗୁନି ।

ଚୋର—କାହିଁ ଆଜ୍ଞା, ଆପଣ ତ ସବୁଦିନେ ଏଠିକି ଆସନ୍ତି ।

—୦—

# ଆପଣ ଜାଣିବାକୁ ଚାହାନ୍ତି

[୧ । ଗ୍ରାହକ ନମ୍ବର ନ ଦେଲେ ଉତ୍ତର ପାଇବେ ନାହିଁ । ଯେଉଁମାନେ ଏଜେଣ୍ଟଙ୍କଠାରୁ ନିୟମିତ ପତ୍ରିକା କିଣନ୍ତି, ସେମାନେ ଏଜେଣ୍ଟଙ୍କ ନାମସହ ପ୍ରଶ୍ନ ପଠାଇ ପାରିବେ ।

୨ । ଇଂରାଜୀ ମାସର ୨୦ ତାରିଖ ପୂର୍ବରୁ ପ୍ରଶ୍ନଗୁଡ଼ିକ ଆମର ହସ୍ତଗତ ହେବା ଆବଶ୍ୟକ ।

୩ । ଆପଣଙ୍କ ପ୍ରଶ୍ନର ଉତ୍ତର କାହିଁକି ଦିଆ ନ ଗଲା, ତାର କାରଣ ଦର୍ଶାଇବାକୁ ଆମେ ବାଧ୍ୟ ନୋହୁଁ ।

୪ । ପ୍ରଶ୍ନ ସଙ୍ଗେ ଅନ୍ୟ କିଛି ଲେଖିବେ ନାହିଁ ।]

୧ । ରବୀନ୍ଦ୍ରନାଥ ପଟ୍ଟନାୟକ, ବୌଦ୍ଧ

ପ୍ର—୧୯୫୪ ମସିହାରେ କେଉଁ ବୈଜ୍ଞାନିକ କଳିଂଗ ପୁରସ୍କାର ପାଇଥିଲେ ? ତାଙ୍କର ଜୀବନୀ ସମ୍ବନ୍ଧରେ କିଛି କହିବେ କି ?

ଉ—ନିଉୟର୍କ ଟାଇମ୍‌ସ ପତ୍ରିକାର ବିଜ୍ଞାନ ବିଭାଗ ସମ୍ପାଦକ ମି. ଓ୍ୱାଲଡମାର କେମ୍ପଟ୍ ଏହି ପୁରସ୍କାର ପାଇଥିଲେ । ତାଙ୍କର ଜୀବନୀ ଏ ବିଭାଗରେ ଦିଆଯାଇ ପାରିବ ନାହିଁ ।

୨ । ବଂଶୀଧର ଦାସ, ରେମ୍ବଜା, ବ୍ରଜରାଜ ନଗର ।

ପ୍ର—ନାମ ଶେଷରେ LL.D ଥିଲେ କଣ ବୁଝାଏ ?

ଉ—Doctor of Laws (Legum Doctor)

୩ । ଜୟନ୍ତ କୁମାର ରଥ, ଭୁବନେଶ୍ୱର ଏବଂ ବିନୋଦ ବିହାରୀ ତ୍ରିପାଠୀ, ସମ୍ବଲପୁର ।

ପ୍ର—ତୁଷାରମାନବ ପ୍ରକୃତରେ ଅଛନ୍ତି କି ନାହିଁ ?

ଉ—ହିମାଳୟ ଆରୋହୀମାନେ ଅନେକ ସ୍ଥାନରେ ବଡ଼ ବଡ଼ ମନୁଷ୍ୟ ପାଦଚିହ୍ନ ଦେଖି ଏହିପରି ଅନୁମାନ କରିଛନ୍ତି । ତେନଜିଂ ମଧ୍ୟ ଏହିପରି ଚିହ୍ନ ଦେଖିଥିବାର ପ୍ରକାଶ କରିଥିଲେ । ଇଉରୋପରୁ ଗତବର୍ଷ କେତେକ ଲୋକ ତୁଷାରମାନବ ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ହିମାଳୟ ଉପରକୁ ଅଭିଯାନ କରିଥିଲେ । ମାତ୍ର କୌଣସି ପ୍ରତ୍ୟକ୍ଷ ପ୍ରମାଣ ମିଳିଲା ନାହିଁ କିମ୍ବା ସ୍ୱଚକ୍ଷୁରେ କେହି ତୁଷାରମାନବ ଦେଖି ନାହାନ୍ତି । ତେଣୁ କେତେକ ଅନୁମାନ କରନ୍ତି ତାହା ମଙ୍ଗଳଗ୍ରହରୁ ଆଗତ ପର୍ଯ୍ୟଟକମାନଙ୍କର ପଦଚିହ୍ନ ହୋଇ ପାରିଥିବ ।

୪ । ଅଶ୍ୱିନୀ କୁମାର ମିଶ୍ର, ବେତନଟୀ

ପ୍ର – ପାଇଲଟ ଟ୍ରେନିଂ ଭାରତରେ କେଉଁଠି ଦିଆଯାଏ ?

ଉ—ଏଲାହାବାଦରେ ଥିବା Civil Aviation ଟ୍ରେନିଂ କେନ୍ଦ୍ରରେ ଏବଂ ଭାରତର ବିଭିନ୍ନ ଫ୍ଲାଇଂ କ୍ଲବରେ ବିମାନ ଚାଳନା ଶିକ୍ଷା ଦିଆଯାଏ । ଓଡ଼ିଶାରେ ଭୁବନେଶ୍ୱରଠାରେ ମଧ୍ୟ ଗୋଟିଏ ଫ୍ଲାଇଂ କ୍ଲବ ଅଛି ।

୫ । ଭଗବତ ସାହୁ, ଗଣନାଥ ପାଠାଗାର

ପ୍ର—ରେଡ଼ିଓ ଚିତ୍ର କଅଣ ? ଟେଲିଭିଜନରେ ସିନା ଛବି ଦେଖାଯାଏ, ରେଡ଼ିଓରେ କିପରି ହୁଏ ?

ଉ—ରେଡ଼ିଓ ଚିତ୍ର ରେଡ଼ିଓରେ କି କୌଣସି ଯନ୍ତ୍ରରେ ଦେଖାଯିବା ଚିତ୍ର ନୁହେଁ । ବେତାର ତରଙ୍ଗ ସାହାଯ୍ୟରେ ଯେପରି ଶବ୍ଦକୁ ପଠାଇ ହେଉଛି, ସେହିପରି ଅନ୍ୟ ଏକ ବୈଦ୍ୟୁତିକ ପ୍ରକ୍ରିୟା ସାହାଯ୍ୟରେ ଚିତ୍ରକୁ ଦୂର ସ୍ଥାନକୁ ପଠାଯାଇପାରୁଛି । ଗୋଟିଏ ଫଟୋକୁ ଖୁବ୍ ଚଞ୍ଚଳ ଏରୋପ୍ଲେନ ଦ୍ୱାରା ପଠାଯିବା ଛଡ଼ା ଅନ୍ୟ ଉପାୟ ନାହିଁ । କିନ୍ତୁ ରେଡ଼ିଓ-ଚିତ୍ର ଅତି ଅଳ୍ପସମୟ ମଧ୍ୟରେ ପୃଥିବୀର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ପଠାଇ ହୁଏ । ଚିତ୍ରର ଆଲୋକ ଓ ଛାୟା ଅଂଶକୁ ବିଦ୍ୟୁତ୍ ତରଙ୍ଗ ମାଧ୍ୟମରେ ଦୂରକୁ ପଠାଇ ଦିଆଯାଏ ଏବଂ ସେଠାରେ ଅନ୍ୟ ଏକ ଯନ୍ତ୍ରରେ ଏ ଚିତ୍ରଟି ଅବିକଳ ମୌଳିକ ରୂପ ପାଏ ।

୬ । ମାଗତା ନାଏକ, ତାଳଚେର

ପ୍ର—ନୋଟ କିପରି ଛପାଯାଏ ?

ଉ—ପ୍ରତ୍ୟେକ ବହି ବା କାଗଜ ଯେପରି ଛପାକଳରେ ଛପାଯାଏ, ନୋଟ ମଧ୍ୟ ସେହିପରି ଛପାଯାଏ । କେବଳ ପ୍ରଭେଦ ଏତିକି ଯେ ଏହାକୁ ସରକାର ଛାପନ୍ତି । ଭାରତ ସରକାର ନାସିକଠାରେ ଥିବା ତାଙ୍କର ନିଜର ସିକ୍ୟୁରିଟି ପ୍ରେସରେ ଏହାସବୁ ଛାପନ୍ତି । ନୋଟଛପାପାଇଁ ସ୍ୱତନ୍ତ୍ର କାଗଜ ଏବଂ କାଳି ବ୍ୟବହୃତ ହୁଏ ।

୭ । ଗ୍ରା.ନଂ. ୧୪୧୫, ଗୋପୀନାଥ ମୌଳିକ ବିଦ୍ୟାପୀଠ

ପ୍ର—ପୃଥିବୀର ବୟସ କେତେ ?

ଉ—କେହି ଠିକ୍ କରି କହି ପାରିବେ ନାହିଁ । ବୈଜ୍ଞାନିକମାନଙ୍କ ମତକୁ ଗ୍ରହଣ କଲେ କୁହା-ଯାଇପାରେ ବୋଧହୁଏ ୧୫୦ କୋଟିରୁ ୩୦୦ କୋଟି ବର୍ଷଭିତରେ ପୃଥିବୀର ଜନ୍ମ ।

୮ । ଘନଶ୍ୟାମ ମଲିକ, ସଅଁରା

ପ୍ର—ବୁଢ଼ାହେଲେ ଆମ୍ଭ ବଉଳ ପୋଡ଼ିଯାଏ କାହିଁକି ?

ଉ—ଏହାର ଉତ୍ତର ଏହି ବର୍ଷର ୮ମ ସଂଖ୍ୟା ୨୭ ପୃଷ୍ଠା ୯ ନମ୍ବର ପ୍ରଶ୍ନର ଉତ୍ତରରେ ଦିଆଯାଇଛି, ଦେଖନ୍ତୁ ।

୯ । ସୋମେଶ୍ୱର ଗିରି, ମହୁଲଡିହା

ପ୍ର—ଭାରତରେ ପ୍ରଥମେ କେଉଁଠି ରେଡ଼ିଓ ଷ୍ଟେସନ ବସିଥିଲା ?

ଉ—୧୯୨୪ ରେ ମାଦ୍ରାଜ ରେଡ଼ିଓ କ୍ଲବ ସ୍ଥାପିତ ହୋଇ ଭାରତରେ ପ୍ରଥମ ରେଡ଼ିଓ କାର୍ଯ୍ୟ ଆରମ୍ଭ ହୋଇଥିଲା । ମାତ୍ର ନିୟମିତ ବେତାର ସର୍ଭିସ ଆରମ୍ଭ ହେଲା ୧୯୨୭ ରେ । ଏହିବର୍ଷ ଜୁଲାଇ ୨୩ ତାରିଖରେ ବମ୍ବେଠାରେ ପ୍ରଥମ ରେଡ଼ିଓ ଷ୍ଟେସନ୍ ସ୍ଥାପିତ ହୋଇ ଥିଲା ଏବଂ କଲିକତା ଷ୍ଟେସନ ଖୋଲିଲା ସେହିବର୍ଷ ଅଗଷ୍ଟ ୨୭ ତାରିଖରେ ।

୧୦ । କରୁଣାକର ସାହୁ, ତିରଣ

ପ୍ର—ଭାରତର ପତ୍ରିକାମାନଙ୍କ ମଧ୍ୟରେ ସର୍ବା-ପେକ୍ଷା କାହାର କାଟତି ବେଶୀ ?

ଉ—ବଙ୍ଗଳା ଦୈନିକ 'ଆନନ୍ଦ ବଜାର ପତ୍ରିକା' ପ୍ରଚାର ସଂଖ୍ୟା ୧ ଲକ୍ଷରୁ ଅଳ୍ପ କିଛି କମ୍ ।

୧୧ । ସୁବୋଧ ଘାପ, ଶରଣ୍ଡାପାଲି

ପ୍ର—ପୃଥିବୀର ଲୋକସଂଖ୍ୟା କେତେ ?

ଉ—୨୩୯ କୋଟି ୯୯ ଲକ୍ଷ ।

୧୨ । ଗଜେନ୍ଦ୍ର ବେହେରା; ମହମ୍ମଦପୁର

ପ୍ର—କେଉଁ ପ୍ରଣାଳୀରେ ହାତଲେଖା ଅକ୍ଷର ଗୁଡ଼ିକ ଅବିକଳ ଭାବରେ ବହିରେ ଛପାଯାଏ ?

ଉ—ବ୍ଲକ୍ ସାହାଯ୍ୟରେ । ଚିତ୍ରଗୁଡ଼ିକ ମଧ୍ୟ ଏହିପରି ବହିରେ ଛପାଯାଏ । ଚିତ୍ର ବା ହସ୍ତଲିପିର ପ୍ରଥମେ ଗୋଟିଏ ଫଟୋ ଉଠାଇ ନିଆଯାଏ ଏବଂ ସୀସା, ପ୍ଲାଷ୍ଟିକ୍ ବା ଜିଙ୍କ୍ ଉପରେ ତାର ଛାପ କରାଯାଏ । ତାକୁ ବ୍ଲକ୍ କହନ୍ତି । ଏହି ବ୍ଲକ୍‌ରୁ ଯେତେ ଇଚ୍ଛା ସେତେ ଚିତ୍ର ଛପାଯାଇ ପାରେ ।

୧୩ । ସୁରେନ୍ଦ୍ର ଚନ୍ଦ୍ର ମଲ୍ଲ, ଛଣିପୁର

ପ୍ର—ମସ୍ତିଷ୍କର ଓଜନ କେତେ ?

ଉ—ସବୁ ପ୍ରାଣୀଙ୍କ ଭିତରେ ମନୁଷ୍ୟର ମସ୍ତିଷ୍କ ସର୍ବାପେକ୍ଷା ଅଧିକ ଓଜନ । ମନୁଷ୍ୟ ମସ୍ତିଷ୍କର ଓଜନ ହେଉଛି ତା ଦେହ ଓଜନର ପ୍ରାୟ $\frac{1}{40}$ ଭାଗ । ତା ପଛକୁ ଓଜନିଆ ମସ୍ତିଷ୍କ ହେଉଛି ସିମ୍ପାଞ୍ଜିର, ମନୁଷ୍ୟ ମସ୍ତିଷ୍କର ଏକ-ତୃତୀୟାଂଶ ଓଜନ । ହାତୀର ମସ୍ତିଷ୍କ ଅପେକ୍ଷାକୃତ ବଡ଼ ହେଲେହେଁ, ତାର ପ୍ରକାଣ୍ଡ ଶରୀର ତୁଳନାରେ ଏହା ତା ଦେହ ଓଜନର ୬୦୦ ଭାଗରୁ ଭାଗେ ମାତ୍ର ।

ବିଭିନ୍ନ ମନୁଷ୍ୟଙ୍କର ମସ୍ତିଷ୍କର ଶକ୍ତିରେ ଯଥେଷ୍ଟ ତାରତମ୍ୟ ଲକ୍ଷିତ ହେଲେହେଁ, ଆକାରରେ ପ୍ରାୟ ସବୁ ସମାନ ।

୧୪ । ବସନ୍ତକୁମାର ହୋତା, ଦେବଗଡ଼

ପ୍ର—ଯୁକ୍ତରାଷ୍ଟ୍ରର ଜାତୀୟ ପତାକାରେ ତାରକା ଚିହ୍ନ ଥିବାର ଉଦ୍ଦେଶ୍ୟ କଣ ?

ଉ—ପ୍ରଥମେ ୧୩ଟି ଷ୍ଟେଟରୁ ଆରମ୍ଭ ହୋଇ ୪୮ଟି ଷ୍ଟେଟକୁ ନେଇ ଏହା ଗଠିତ—ତେଣୁ ଜାତୀୟ

( ୩୧ ପୃଷ୍ଠା ଦେଖନ୍ତୁ )




## ଓଡ଼ିଶା ଖବର

ତା ୬ । ୪—ନିଖିଳ ଉତ୍କଳ ସଙ୍ଗୀତ ପ୍ରତିଯୋଗିତା ତା ୨୮ । ୩ । ୫୫ ରୁ ଆରମ୍ଭ ହୋଇ ତା ୧ । ୪ । ୫୫ ରେ ଶେଷ ହେଲା ।

ତା ୮—ଶ୍ରୀ ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ସଭାପତିତ୍ୱରେ ଉତ୍କଳ ନୃତ୍ୟସଙ୍ଗୀତ ନାଟ୍ୟକଳା ପରିଷଦର ଅଧିବେଶନ ଆରମ୍ଭ ହେଲା ।

ତା ୯—ଭାରତ ସ୍କାଉଟସ ଓ ଗାଇଡ଼ସ୍ ଅର୍ଗାନାଇଜିଂ କମିଶନର ଶ୍ରୀ ଡ଼. ପି. ଯୋଷୀଙ୍କ ଓଡ଼ିଶା ଆଗମନ ।

ତା ୧୫— ଓଡ଼ିଶା ଆସେମ୍ବ୍ଲିରେ ଭାଗଚାଷୀ ସାହାଯ୍ୟ ବିଲ ଗୃହୀତ ହେଲା ।

ତା ୨୦—ଓଡ଼ିଶା ଆସେମ୍ବ୍ଲିର ବଜେଟ ଅଧିବେଶନ ଶେଷ ହେଲା ।

ତା ୨୧—ଓଡ଼ିଶାର ଭାଗଚାଷୀ ସାହାଯ୍ୟ ବିଲ ରାଷ୍ଟ୍ରପତିଙ୍କ ଅନୁମୋଦନ ପାଇଲା ।

ତା ୨୫—କେନ୍ଦ୍ର ବେତାର ଓ ପ୍ରଚାରବିଭାଗ ମନ୍ତ୍ରୀ ଶ୍ରୀ ବି. ଭି. କେଶକାର ମଇ ୮ ତାରିଖରେ ଓଡ଼ିଶା ଆସି କଟକ ବେତାର ଷ୍ଟେସନ ପରିଦର୍ଶନ କରିବେ ।

ତା ୨୯—ଉତ୍କଳ ବିଶ୍ୱବିଦ୍ୟାଳୟ ମାଟ୍ରିକ୍ୟୁଲେସନ ପରୀକ୍ଷା ଫଳ ପ୍ରକାଶ ପାଇଲା ।

## ଭାରତ ଖବର

ତା ୯ । ୪—ଭାରତର ଆଗାମୀ ସାଧାରଣ ନିର୍ବାଚନ ୧୯୫୬ ମସିହା ଶେଷସୁଦ୍ଧା ହେବ ବୋଲି ଜଣା ଯାଇଛି ।

ତା ୧୧—ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ଆସନ୍ତା ମଇ ୮ ତାରିଖରେ ବ୍ରହ୍ମପୁରଠାରେ ବସୁଛି । ଏଥିରେ ଯୋଗ ଦେବାକୁ ପଣ୍ଡିତ ନେହେରୁ, କଂଗ୍ରେସର ସଭାପତି ଶ୍ରୀ ୟୁ.ଏନ୍. ଧେବର ପ୍ରମୁଖ ବିଶିଷ୍ଟ ବ୍ୟକ୍ତି ଓଡ଼ିଶା ଆସୁଛନ୍ତି ।

ତା ୨୩—ଜଣାଯାଇଛି ଯେ ପ୍ରଧାନ ମନ୍ତ୍ରୀ ପଣ୍ଡିତ ଶ୍ରୀ ଜବାହାରଲାଲ ନେହେରୁ ଆଗାମୀ ଜୁନ ୪ ତାରିଖରେ ରୁଷିଆ ପରିଭ୍ରମଣରେ ଯିବେ ।

## ବିଦେଶ ଖବର

ତା ୨ । ୪—ଫିଲିପାଇନ ଦ୍ୱୀପପୁଞ୍ଜରେ ପ୍ରବଳ ଭୂମିକମ୍ପ ଫଳରେ ହଜାର ହଜାର ଲୋକ ଗୃହଶୂନ୍ୟ ।

ତା ୫—ପାକିସ୍ଥାନର ଯୋଗାଯୋଗ ମନ୍ତ୍ରୀ ଡଃ ଖାଁ ସାହେବ ପଶ୍ଚିମ ପାକିସ୍ଥାନର ମୁଖ୍ୟମନ୍ତ୍ରୀ ଏବଂ ଏମ୍.ଏ. ଗୁରୁମାନୀ ଉକ୍ତ ରାଜ୍ୟର ଲାଟ ହେଲେ ।

ତା ୬—ବିଲାତର ଜାତୀୟ ଦଳର ନେତା ଓ ପ୍ରଧାନ ମନ୍ତ୍ରୀ ସାର୍ ଉଇନ୍‌ଷ୍ଟନ ଚର୍ଚ୍ଚିଲ ଅବସର ଗ୍ରହଣ କଲେ ଏବଂ ସାର୍ ଆନ୍ଥୋନି ଇଡେନ ନୂତନ ପ୍ରଧାନ ମନ୍ତ୍ରୀରୂପେ କାର୍ଯ୍ୟଭାର ଗ୍ରହଣ କଲେ । ମିଃ ହାରଲଡ ମ୍ୟାକ୍‌ମିଲାନ ବୈଦେଶିକ ମନ୍ତ୍ରୀ ନିଯୁକ୍ତ ହେଲେ ।

—ପାରସ୍ୟର ପ୍ରଧାନ ମନ୍ତ୍ରୀ ଶ୍ରୀ ଜାହେଦୀ ଚିକିତ୍ସା ପାଇଁ ଜର୍ମାନୀ ଯିବାରୁ ତାଙ୍କ ସ୍ଥାନରେ ହୋସେନ୍ ଆଲା ପ୍ରଧାନ ମନ୍ତ୍ରୀ ନିଯୁକ୍ତ ହେଲେ ।

ତା ୧୮—ବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନଙ୍କ ପରଲୋକ ।

ତା ୨୬—ଚଳିତ ୧୮ ତାରିଖରେ ଇଣ୍ଡୋନେସିଆର ବାନ୍ଦୁଙ୍ଗଠାରେ ଏସିଆ ଆଫ୍ରିକା ସମ୍ମିଳନୀ ୨୯ଟି ଦେଶର ପ୍ରତିନିଧିଙ୍କୁ ନେଇ ଆରମ୍ଭ ହୋଇ ୨୪ ତାରିଖରେ ଶେଷ ହେଲା ।

—୦—



[ତୁମ ବୁଦ୍ଧିର ପ୍ରଖରତା ପରୀକ୍ଷା କରିବା ପାଇଁ ତଳେ କେତେଗୋଟି ପ୍ରଶ୍ନ ଦିଆଯାଇଛି । ସାଧାରଣ ବୁଦ୍ଧି-ସମ୍ପନ୍ନ ଲୋକ ସେଗୁଡ଼ିକ ୧୦ ମିନିଟ ଭିତରେ ଉତ୍ତର କରିବାର କଥା । ଚେଷ୍ଟା କରି ଦେଖ ।]

୧ । କେଉଁ ଉତ୍ତରଟି ଠିକ୍ କହ—

ସମୁଦ୍ର ଜଳ ଲୁଣିଆ କାରଣ (କ) ନଈମାନେ ଅନବରତ କଣ୍ଟି ପରିମାଣରେ ଲୁଣ ସମୁଦ୍ରକୁ ବହି ନିଅନ୍ତି । (ଖ) ସମୁଦ୍ରଶଯ୍ୟାରେ ଠାଏ ଠାଏ ଲୁଣ ପାହାଡ଼ମାନ ଅଛି । (ଗ) ଲୁଣିମାଛ ସମୁଦ୍ରରେ ପହଁରୁ ଥାନ୍ତି । (ଘ) ସମୁଦ୍ରରେ ଥିବା ଜୀବମାନେ ପାଣିରେ ମରିଯାନ୍ତି; ତାଙ୍କରି ଦେହରୁ ଲୁଣ ବାହାରେ ।

୨ । ଏସବୁ ବରମାନଙ୍କ ମଧ୍ୟରୁ ତୁମେ କେତୋଟିଙ୍କୁ ଜାଣିଛ—

ବର···ଏକପ୍ରକାର ଛୁରି ।
ବର···ଗୃହକର୍ମରୁ ବାହାର ହେବା ।
ବର··ଏକ ପ୍ରକାର କୋଳ ।
ବର···ବିବାହ ଦିନ ବରସଙ୍ଗରେ ଯେଉଁ ବନ୍ଧୁବର୍ଗ କନ୍ୟା ଘରକୁ ଯାଆନ୍ତି ।
ବର···ଗୌର ବର୍ଣ୍ଣର ସ୍ତ୍ରୀ ।

୩ । ଶୂନ୍ୟସ୍ଥାନ ପୂରଣ କର—

ଟଙ୍କାକୁ — ଯାହା, ସେରକୁ ଛଟାଙ୍କି ତାହା ।
ଫଳରେ ଗ୍ରେମା ଯାହା, ଦେହର — ତାହା ।
ଛୁଞ୍ଚିକୁ ସୂତା ଯାହା, — କୁ କଲମ ତାହା ।

୪ । ହରି ସାଇକେଲରେ ଯାଉଥିବା ବେଳେ ବିପରୀତ ଦିଗରୁ ସାଇକେଲରେ ଆସୁଥିବା ଜଣେ ଚପରାଶି ସହିତ ତାର ସାଇକେଲର ଧକ୍କା ଲାଗିଲା । ସୌଭାଗ୍ୟକୁ ଜୋରରେ ବ୍ରେକ୍ ଦେଇଦେବା ଫଳରେ ବିଶେଷ କ୍ଷତି ହେଲାନାହିଁ । ହରି ବାଁ ହାତରେ ଚପରାଶିର ବାଁ ହାତକୁ ଧରିନେଲା । କିଏ ରାସ୍ତାର ନିୟମ ଲଙ୍ଘନ କରିଥିଲା ?

୫ । ପରବର୍ତ୍ତୀ ଦୁଇଟି ଅଙ୍କ କଣ ?

୧୩-୭, ୧୩-୮, ୧୩-୯, ୧୩-୧୦, — —

—୦—

(୨୯ ପୃଷ୍ଠାର ଅବଶିଷ୍ଟାଂଶ)

ପତାକାରେ ୧୩ ଟି ଡୋରି ଓ ୪୮ଟି ନକ୍ଷତ୍ର ଚିହ୍ନିତ ଅଛି । ଏହି ପତାକାର ନାମ 'Stars and Stripes'

୧୬ । ସର୍ଦ୍ଦାର କୃଷ୍ଣଚନ୍ଦ୍ର ଲେଙ୍କା, ବାସନ୍ତୀ ଗରିବ ପାଠାଗାର

ପ୍ର—କ୍ଲୋରୋଫର୍ମ କଣ ? ଏହା କିଏ ଆବିଷ୍କାର କରିଥିଲେ ?

ଉ—ସର୍ ଜେମସ୍ ସିମ୍ପସନ୍ ଏହା ଆବିଷ୍କାର କରିଥିଲେ । ଏହି ଔଷଧ ଆଘ୍ରାଣ କଲେ ସଙ୍ଗେ ସଙ୍ଗେ ଲୋକର ଚୈତନ୍ୟ ଲୋପ ପାଏ । ଅସ୍ତ୍ରୋପଚାରର ପୂର୍ବରୁ ରୋଗୀକୁ କ୍ଲୋରୋଫର୍ମ ଦେଇ ଅଚେତ କରିଦିଆଯାଏ ।

୧୭ । ସୁରେଶଚନ୍ଦ୍ର ମହାପାତ୍ର, ବଉଦଗଡ଼

ପ୍ର—ଭାରତର ସର୍ବୋଚ୍ଚ କୋଠା କେଉଁଠି ? ସେଠାରେ କିଏ ରହନ୍ତି ?

ଉ—କଲିକତାର ୧୩ ମହଲା ବିଶିଷ୍ଟ କୋଠା-ଘର ପଶ୍ଚିମ ବଙ୍ଗର ସପ୍ଲିମେଣ୍ଟାରୀ ସେକ୍ରେଟେରିଏଟ କେବଳ ଭାରତରେ କାହିଁକି, ଏସିଆରେ ମଧ୍ୟ ଉଚ୍ଚତମ ।

# ପୁସ୍ତକ ପରିଚୟ

**କୋଣାର୍କ**—କୋଣାର୍କ ସାଂସ୍କୃତିକ ଅନୁଷ୍ଠାନର ଦ୍ୱିମାସିକ ପତ୍ରିକା । ସଂପାଦକ ଶ୍ରୀ ସୁରେନ୍ଦ୍ର ମୋହନ ଦାସ, ବି.ଏସ୍‌ସି., ଓ ଶ୍ରୀ ହୃଦାନନ୍ଦ ମହାନ୍ତି ବି.ଏସ୍‌ସି. (ଏଜି) । ପ୍ରତିଖଣ୍ଡର ମୂଲ୍ୟ ୫୦/୦ । ଅଫିସ—ତେଲଙ୍ଗାବଜାର, କଟକ ।

**ରୂପଲେଖା**—ନୂଆ ସିନେମା ପତ୍ରିକା । ସମ୍ପାଦକ—ରତିମନ । ପ୍ରତିଖଣ୍ଡର ମୂଲ୍ୟ ୫୦/୦ । ତିରଙ୍ଗ ପ୍ରଚ୍ଛଦପଟରେ ପତ୍ରିକାଟି ସୁନ୍ଦର ହୋଇଛି । ଅଫିସ—ଗୁରୁଦ୍ୱାରଚୌକ, କଟକ—୨

# ପିଲାଙ୍କ ପକେଟ

## ଏମାନେ ନୂତନ ସଭ୍ୟ ହେଲେ—

(୨୨) ସୃଷ୍ଟିଧର ସାମଲ ଓ (୨୩) ପୂର୍ଣ୍ଣଚନ୍ଦ୍ର ବେହେରା, ବାଲେଶ୍ୱର ଜିଲ୍ଲାସ୍କୁଲ, ୯ମ ଶ୍ରେଣୀ । (୨୪) ରମେଶଚନ୍ଦ୍ର ପଟ୍ଟନାୟକ, ୮ମ ଶ୍ରେଣୀ, ଉଦଳା ହାଇସ୍କୁଲ । (୨୫)ଦେବେନ୍ଦ୍ର ଗୁପ୍ତ, ପୁରୀ ଜିଲ୍ଲା ସ୍କୁଲ, (୨୬) ପୂର୍ଣ୍ଣଚନ୍ଦ୍ର ପୃଷ୍ଟି, C/o ନିଧି ପୃଷ୍ଟି, ବଡ଼ଦାଣ୍ଡ, ପୁରୀ । (୨୭) ପ୍ରତାପକୁମାର ବେବର୍ତ୍ତା, C/o ଲକ୍ଷ୍ମୀକାନ୍ତ ବେବର୍ତ୍ତା, କରଣ ସାହି, ପାରଳାଖେମୁଣ୍ଡୀ । (୨୮) ନିର୍ମଳେନ୍ଦୁ ଦାସ, C/o ଟି. ଏନ୍ ଦାସ, ଶିକ୍ଷକ ଏମ୍. କେ. ସି. ହାଇସ୍କୁଲ, ବାରିପଦା । (୨୯) ଜନ୍ମେଜୟ ମହାପାତ୍ର, ୧୦ମ ଶ୍ରେଣୀ, ବି. ଏମ୍. ହାଇସ୍କୁଲ, ଭୁବନେଶ୍ୱର । (୩୦) ପ୍ରସନ୍ନକୁମାର ମିଶ୍ର, ଜୟନ୍ତୀ ଷ୍ଟୋର ପୁରୀ । (୩୧) ଏସ୍. ମଲ୍ଲ ।

ନଂ ୩୦ ସଭ୍ୟଙ୍କର ପୂରା ଠିକଣା ଆବଶ୍ୟକ ।

ତୁମର ପରୀକ୍ଷା ସରିବଣି । ଦୀର୍ଘ ଗ୍ରୀଷ୍ମଛୁଟି ଆସୁଛି । ପିଲାଙ୍କ ପକେଟ ପାଇଁ ଅଧିକ ସଭ୍ୟ ସଂଗ୍ରହ କରିବାରେ ଲାଗିପଡ଼ । ହଁ ଗୋଟିଏ କଥା । ଯେତେବେଳେ ଚିଠିପତ୍ର ଲେଖିବ ବା ପ୍ରତିଯୋଗିତାର ଉତ୍ତର ପଠାଇବ, ତୁମ ସଭ୍ୟ ନଂ ଲେଖିବାକୁ ଭୁଲିବ ନାହିଁ । ନମ୍ବରଟି ନ ଦେଲେ ମତେ ବଡ଼ ଅଡୁଆ—ପକେଟ ବଢ଼ିଗଲେ, ତୁମକୁ ସେ ମୁଣି ଭିତରୁ ଅଣ୍ଡାଳି ଅଣ୍ଡାଳି ପାଇବି ନାହିଁ ।

ଗତ ମାସର ପ୍ରତିଯୋଗିତାରେ ସମସ୍ତେ କାହିଁକି ଯୋଗ ନ ଦେଲ ? ପୁରୁଣା ସଭ୍ୟମାନେ ବିନା ଫିସ୍‌ରେ ଯୋଗ ଦେଇ ପାରନ୍ତି । ବର୍ଷକଯାଏ ଆଉ ଫିସ୍ ଦେବାକୁ ପଡ଼ିବ ନାହିଁ । ପ୍ରତି ମାସରେ ପ୍ରତିଯୋଗିତା ହେବ ଏବଂ ପୁରସ୍କାର ଦିଆଯିବ । ନୂତନ ସଭ୍ୟମାନଙ୍କୁ ଅନୁରୋଧ, ସେମାନେ ନାଁ ପାଖରେ 'ନୂତନ ସଭ୍ୟ' ବୋଲି ଲେଖିବେ ।

## ଗତମାସ ପ୍ରତିଯୋଗିତାର ଫଳାଫଳ—

[ଶ୍ରଦ୍ଧେୟ ସହଦେବ (ନଂ ୧), ତୁମେ ୧ମ ପୁରସ୍କାର ପାଇବାର ଉପଯୁକ୍ତ ଉତ୍ତର ଦେଇଥିଲ, ମାତ୍ର ୩୬ଟି ଶବ୍ଦ କରି ଦେଇଥିବାରୁ ସେଥିରୁ ବଞ୍ଚିତ ହେଲ ।]

୧ମ ପୁରସ୍କାର—ଶ୍ରୀ ଗଣେଶ୍ୱର ମିଶ୍ର (ନଂ ୧୪)

ପାଞ୍ଚକଥା ଜାଣିବାପାଇଁ ହେଲେ ପତ୍ରପତ୍ରିକା ପଢ଼ିବା ଆବଶ୍ୟକ । ଓଡ଼ିଆ ପିଲାଙ୍କ ପକ୍ଷରେ ସଂସାର ବିଶେଷ ଉପଯୋଗୀ, କାରଣ—ଏହି ପତ୍ରିକାରେ ଅତି ପ୍ରାଞ୍ଜଳ ଭାଷାରେ ଆବାଳବୃଦ୍ଧବନିତା ସମସ୍ତଙ୍କ ଜାଣିବା ଉପଯୋଗୀ ବିଭିନ୍ନ ଜ୍ଞାତବ୍ୟ ବିଷୟମାନ ଯେପରି ପ୍ରକାଶିତ ହୁଏ, ଅନ୍ୟ କୌଣସି ଓଡ଼ିଆ ପତ୍ରିକାରେ ସେପରି ହୁଏ ନାହିଁ । ଅଳ୍ପମୂଲ୍ୟ ହେତୁ ସମସ୍ତଙ୍କ ପକ୍ଷରେ ମଧ୍ୟ ଏହା ସହଜଲଭ୍ୟ ।

୨ୟ ପୁରସ୍କାର—ଶ୍ରୀ ପ୍ରଭାତଚନ୍ଦ୍ର ଦାସ (ନଂ ୫)

—ଏହାର ମୁଖ୍ୟ ଉଦ୍ଦେଶ୍ୟ ତଥା ପ୍ରତ୍ୟେକ ସଂଖ୍ୟାରେ ପ୍ରକାଶିତ ବିଷୟମାନ ଆଲୋଚନା କଲେ ଜଣାଯାଏ ଯେ ସଂସାରରେ ଘଟୁଥିବା ଘଟଣାମାନଙ୍କର ଜ୍ଞାତବ୍ୟ ତଥ୍ୟ ସଂଗ୍ରହକରି ପାଠକମାନଙ୍କୁ ପରିବେଷଣ କରିବାରେ ଓଡ଼ିଆ ମାସିକ ପତ୍ରିକାମାନଙ୍କ ମଧ୍ୟରେ ସଂସାର ଅଦ୍ୱିତୀୟ ।

୩ୟ ପୁରସ୍କାର—ଶ୍ରୀ ପୂର୍ଣ୍ଣ ଚନ୍ଦ୍ର ବେହେରା (ନଂ ୨୩)

—ଏହା ସାଧାରଣ ଜ୍ଞାନୋପଯୋଗୀ ଏକମାତ୍ର ଚିତ୍ତାକର୍ଷକ, ସୁଲଭ, ଉଚ୍ଚାଙ୍ଗ ମାସିକ ପତ୍ରିକା ଯେଉଁଥିରୁ କି ପ୍ରତ୍ୟେକ ଓଡ଼ିଆ ଗୃହ ଘରେ ବସି ସ୍ୱଳ୍ପ ବ୍ୟୟରେ ଓଡ଼ିଶା, ଭାରତ ତଥା ବିଦେଶର ଶିଳ୍ପ, ବାଣିଜ୍ୟ, ବିଜ୍ଞାନ, ରାଜନୈତିକ, ସାମାଜିକ, ଶିକ୍ଷା ଓ ଅର୍ଥନୈତିକ ସମ୍ବାଦ ସହଜରେ ପାଇ ପାରନ୍ତି ।

## ଆସନ୍ତା ମାସପାଇଁ ପ୍ରତିଯୋଗିତା—

ଏପରି ୫ଟି ଲେଖାଏଁ କଥା କହ—

(କ) ଯାହାକୁ ଦେଖିଲେ ହସ ମାଡ଼େ ।

(ଖ) ଯାହାକୁ ଦେଖିଲେ କାନ୍ଦ ମାଡ଼େ ।



Printed & Published by Sri R. K. Nanda B. A. D. Ed. at the Parijat Press,
Telengabazar, Cuttack-1—1955.

Regd. No. O-57






## 'ସଂସାର'ର ନିୟମାବଳୀ

୧ । ଏହା ପ୍ରତି ଇଂରାଜି ମାସ ତା ୩ ରିଖରେ ପ୍ରକାଶିତ ହେବ ।

୨ । ଚିଠିପତ୍ର ବା ଟଙ୍କା ପଠାଇଲାବେଳେ ଦୟାକରି ଗ୍ରାହକ ନମ୍ବର ଉଲ୍ଲେଖ କରିବେ ।

୩ । ପତ୍ରିକାପାଇଁ ଲେଖା ପଠାଇବାବେଳେ ମନେ ରଖିବେ ଆମେ ସଂକ୍ଷିପ୍ତ ତଥ୍ୟମୂଳକ ଲେଖା, ହାସ୍ୟରସାତ୍ମକ ଗଳ୍ପ ଓ ପଦ୍ୟ ବେଶୀ ପସନ୍ଦ କରୁ । ଅପ୍ରକାଶିତ ଲେଖା ଫେରାଇ ଦିଆଯାଏ ନାହିଁ ।

୪ । ବିଜ୍ଞାପନ ଓ ଏଜେନ୍‌ସି ପାଇଁ ପରିଚାଳକଙ୍କୁ ଲେଖନ୍ତୁ ।

୫ । ବାର୍ଷିକ ମୂଲ୍ୟ ଅଗ୍ରୀମ ଦେୟ, ନମୁନା ଖଣ୍ଡିକ ପାଇଁ ଛଅଅଣାର ଡାକଟିକଟ ପଠାଇବେ ।

୬ । ପତ୍ରିକା ଭି. ପି. ରେ ପଠାଇବାକୁ ଅନୁରୋଧ କରିବେ ନାହିଁ ।

୭ । ଯାବତୀୟ ଚିଠିପତ୍ର ଓ ଟଙ୍କା କେବଳ "ସଂସାର, ତେଲେଙ୍ଗାବଜାର, କଟକ-୧" ଠିକଣାରେ ପଠାଇବେ ।

ପରିଚାଳନା ସମ୍ପାଦକ—**ଶ୍ରୀ ଭଗବାନ ଷଡ଼ଙ୍ଗୀ**